ପ୍ରକାଶକ:—

ଲକି ପବ୍ଲିକେଶନ୍ସ

ଓ. ଟି. ଏମ୍. ବଜାର

ଚୌଦ୍ୱାର, କଟକ

ମୂଲ୍ୟ—ଟ ୬-୦୦ (ଛଅଟଙ୍କା ମାତ୍ର)

ପ୍ରଥମ ସଂସ୍କରଣ—ଦଶହରା, ୧୯୮୩

ମୁଦ୍ରକ- କଳିଙ୍ଗ ପ୍ରିଣ୍ଟିଂ ୱାର୍କସ
ଓ. ଟି: ଏମ୍ ବଜାର,
ଚୌଦ୍ୱାର, କଟକ

ଲକି ପବ୍ଲିକେଶନ୍ସର -

ପରବର୍ତ୍ତୀ ଆକର୍ଷଣ ! !

# ବି
# ଷ
# କ
# ନ୍ୟା'

ଲେଖିକା - ଶ୍ରୀମତୀ ନଳିନୀପ୍ରଭା ପଟ୍ଟନାୟକ

ମୂଲ୍ୟ - ଟ [illegible]-୩୦

# * ପ୍ରଜା *

ଗାଁ ଗହଳର ସୁଖ ଦୁଃଖ, ସମାଜର ଅନୀତି, ବ୍ୟଭିଚାର,
ଶାସନ କଳର ଦୁର୍ନୀତି – ଭ୍ରଷ୍ଟାଚାର ଉପରେ
ନିର୍ଭୀକ ମତାମତ ଦେବାରେ ଅଗ୍ରଣୀ
ଏହି ପତ୍ରିକାଟି ସର୍ବତ୍ର ଆଦୃତ ।

ମୁଖ୍ୟ ସମ୍ପାଦକ—ଶ୍ରୀ ନାରାୟଣ ଦାସ

ଯୌବନ ଥିଲା ମନୋରମ ।

ସୁନୀଲ ଗୋଟିଏ ପୁରୁଣା କୋଠାର ତଳ ମହଲାରେ ନିଜର ଟେଲି ସ୍କୋପିକ ଲେନ୍ସଥିବା କ୍ୟାମେରା ନେଇ ଠିଆ ହୋଇଥିଲା । ସେହି କୋଠା କମର୍ସିଆଲ ଷ୍ଟ୍ରିଟରେ ଥିଲା ଏବଂ ରାସ୍ତାର ପ୍ରତ୍ୟେକ ମୋଡ଼ ପର୍ଯ୍ୟନ୍ତ ପରିଷ୍କାର ଭାବେ ସେଠାରୁ ଦେଖାଯାଉଥିଲା । ସେଠାରେ ମୁସଲମାନ-ମାନଙ୍କର ପଟୁଆର ବାହାରିବାର ଥିଲା । ଯାହାରକି ଫଟୋ ଉଠାଇବା ପାଇଁ ସୁନୀଲ ଘର ମାଲିକଙ୍କଠାରୁ ଅନୁମତି ନେଇ ସେହି କୋଠା ଉପରକୁ ଚଢ଼ିଥିଲା ।

ଖଣ୍ଡିଏ ପରେ ଖଣ୍ଡିଏ ସିଗାରେଟ ଟାଣି ସେ ଅପେକ୍ଷା କରି ଠିଆ ହୋଇଥାଏ ।

ଶୋଭା ଯାତ୍ରାକାରୀ ପହଞ୍ଚିବାକୁ ସମୟ ଡେରି ବୋଲି ଜଣା ପଡୁଥାଏ ।

ସେହି ଲାଇନ୍‌ରେ ତିନି ମହଲାର ଗୋଟିଏ ଆଧୁନିକ କୋଠାକୁ ସମୟେ ସମୟେ ସେ ଦୃଷ୍ଟିପାତ କରୁଥିଲା । ସେହି କୋଠାର ନାମ ଥିଲା 'ଶ୍ରୀ ନିବାସ ହାଉସ' ଏବଂ ତାହା ବିଭିନ୍ନ ଅଫିସକୁ ଭଡ଼ାଦେବା ପାଇଁ ତିଆରି ହୋଇଥିଲା । ସେହି କୋଠାର ତୃତୀୟ ମହଲାର ଗୋଟିଏ ଫ୍ଲାଟରେ ସାପ୍ତାହିକ ପତ୍ର 'ହଲଚଲ'ର ଅଫିସ ଥିଲା ଏବଂ ସୁନୀଲ ଭାବୁଥିଲା ଫଟୋ ଉଠାଇ ସାରିଲେ ସେ 'ହଲଚଲ' ଅଫିସକୁ ଯିବ ଓ ସେଠାରେ ହରିପ୍ରକାଶ ତ୍ୟାଗୀ ସହିତ ସାକ୍ଷାତ କରିବ ।

ହରି ପ୍ରକାଶ ତ୍ୟାଗୀ ସେହି ପତ୍ରିକାର ସମ୍ପାଦକ ଓ ପ୍ରକାଶକ ଥିଲେ । ପ୍ରଥମେ ସେ 'ବ୍ଲାଷ୍ଟ'ର ସୁନୀଲ ସହିତ ରିପୋର୍ଟର ଥିଲେ ।

ପ୍ରାୟ ଦେଢ଼ବର୍ଷ ପୂର୍ବରୁ 'ବ୍ଲାଷ୍ଟ'ରୁ ଚାକିରି ଛାଡ଼ି ନିଜେ ପତ୍ରିକା ବାହାର କରୁଛନ୍ତି । ପତ୍ରିକାର ପ୍ରସାର ବେଶି ନଥିଲେ ମଧ୍ୟ ଖାଗୀ ଅଳ୍ପ ଦିନରେ ନାଁ କରିଗଲେଣି । ତାଙ୍କର ନାଆଁ ହେବାର ସବୁଠୁଁ ବଡ଼ କାରଣ ହେଉଛି, ଶ୍ରୀ ନିବାସ ହାଉସ ପରି ଏତେ ମୂଲ୍ୟବାନ ଘରେ ସେ ଅଫିସ କରିଥିଲେ । କେତେକ କହନ୍ତି ଯେ ଖାଗୀ ପତ୍ରିକା ନାଁରେ ସହରର କେତେକ ଲୋକଙ୍କୁ ବ୍ଲାକମେଲିଂ କରିବାରେ ଧୁରନ୍ଧର ଥିଲେ ।

ସୁନୀଲ ବହୁଥର ସେଥିରେ ହସ୍ତକ୍ଷେପ କରିବାକୁ ଚାହୁଁଥିଲେ ମଧ୍ୟ ତାହା କରିପାରି ନଥିଲେ ।

କିନ୍ତୁ ଏଥର ସୁନୀଲର ଦୃଷ୍ଟି 'ଶ୍ରୀ ନିବାସ ହାଉସ' ଉପରେ ନିକ୍ଷିଲା ।

କୋଠାର ମୁଖ୍ୟ ଦ୍ୱାର ଦେଇ ଗୋଟିଏ ଯୁବତୀ ବାହାରିଲା । ସେ ଏପରି ଭୟଭୀତ ଜଣାପଡ଼ୁଥିଲା । ସତ ଯେମିତି କେଉଁଠି ଭୂତ ଦେଖିଛି ।

ସୁନୀଲ ସେଇ ଯୁବତୀକୁ ଚିହ୍ନିଥିଲା । ତାର ନାମ ଅଚଳା ମଜୁମଦାର । ସେ ସହରର ଖ୍ୟାତନାମା ଶିଳ୍ପପତି ଏ. କେ. ମଜୁମଦାରଙ୍କର ଏକମାତ୍ର ଝିଅ । ଆଜକୁ ଦୁଇବର୍ଷ ପୂର୍ବେ ସେ କିଛି ମାସ ପାଇଁ 'ବ୍ଲାଷ୍ଟ'ରେ ଚାକିରି କରିଥିଲା । ପାଠପଢ଼ା ସମାପ୍ତ କରିସାରି ସେ ଶିକ୍ଷାନବିଶ ଭାବେ 'ବ୍ଲାଷ୍ଟ'ରେ ଭର୍ତ୍ତି ହୋଇଥିଲା । ଚାକିରିରେ ମନ ନ ଲାଗିବାରୁ ସେ ସେଠାରୁ ଚାଲିଗଲା । ଝିଅଟି ଖୁବ୍ ସୁନ୍ଦରୀ ଓ ଆଧୁନିକ ସ୍ୱାଧୀନ ମନୋଭାବ ସମ୍ପନ୍ନା ଥିଲା । ସମ୍ବାଦପତ୍ରର ରୁଟିନ ଅନୁଯାୟୀ କାମ ତାର ଆୟତ୍ତ ବାହାରେ ଥିଲା । ସୁନୀଲ ଆଶ୍ଚର୍ଯ୍ୟ ହେଉଥିଲା ଯେ ସେ କିପରି କିଛିମାସ 'ବ୍ଲାଷ୍ଟ'ରେ ଟିକି ପାରିଲା ।

ସୁନୀଲ ଅନେକ ଦୂର ପର୍ଯ୍ୟନ୍ତ ରାସ୍ତାକୁ ଅନାଇ ରହିଲା । ସେ ପର୍ଯ୍ୟନ୍ତ ରାସ୍ତାରେ ପଟୁଆର ଦୃଷ୍ଟିଗୋଚର ହେଉନଥିଲା ।

ସୁନୀଲ ସିଗାରେଟ ପକାଇ ଦେଇ କ୍ୟାମେରା ନେଇ ଚାଲିଗଲା ।

ଅଚଳା ଫୁଟ ପାଥରେ ସେହି ଆଡକୁ ଆସୁଥିଲା । ସେ ବ୍ୟାକୁଳ ଭାବେ ଚାରିଆଡକୁ ଚାହୁଁଥିଲା ।

ସୁନୀଲ ଫୁଟପାଥ୍ ଉପରେ ତା ସମ୍ମୁଖରେ ଆସି ଠିଆ ହେଲା ।

ଅଚଳା ତା ମନ୍ଦ୍ରିତ ସଚେତପେସର ଧକ୍କା ଖାଇଗଲା ।

"ହ୍ୟାଲୋ ଅଚଳା" – ସୁନୀଲ କହିଲା ଅଚଳା ମୁଣ୍ଡ ଉଠାଇଲା । ସୁନୀଲକୁ ଦେଖି ତା ଦେହରେ ଜୀବନ ପଶିଲା । ସେ ସୁନୀଲର ହାତ ଜୋରରେ ଧରିନେଇ ପଚାରିଲା— "ସୁନୀଲ ତୁମେ" ।

"ହଁ ତୁମେ କାହିଁକି ଏପରି ବିଚଳିତ ହେଉଛ ?" ମୁଁ—ମୁଁ ନାଇଁ ତ......... "

"ବର୍ତ୍ତମାନ ଶ୍ରୀ ନବାପ ହାଉସରୁ ତୁମେ ବାହାରିବାର ମୁଁ ଦେଖିଲି । ତୁମେ ସେଠାରୁ ଏପରି ବାହାରିଲ ଯେ ସଚେତପେସର ପରେ କଅଁ ଲାଗି ଯାଇଥିବା ବୋଧ ହେଲା" ।

ସେ ଚୁପ୍ ରହିଲା ଓ ଖୁବ୍ ଭୟଭୀତ ଜଣାପଡୁଥିଲା ।

"ସେଠାକୁ କ'ଣ ଖାରାପ ସବୁ ଦେଖିବା କରିବାକୁ ଯାଇଥିଲ" । ସେ ଚମକି ପଡିଲା ।

"କଥା କ'ଣ, ଅଚଳା ?

"ସୁନୀଲ— ସେ ସୁନୀଲ ହାତକୁ ଜୋରରେ ଧରି କହିଲା - ତୁମେ ଶିଘ୍ର ମୋ ସାଙ୍ଗରେ ଚାଲ ।

"କେଉଁଠିକୁ ? ସୁନୀଲ ପଚାରିଲା ।

ଯେଉଁଠାକୁ ହେଉ । କମର୍ଶିଆଲ ଷ୍ଟ୍ରୀଟଠାରୁ ଦୂରକୁ ।

"କାହିଁକି ? ଏଠାରେ କ'ଣ ହୋଇଛି" ।

"ପରି ! ମୁଁ ଯାଇ ପାରିବି ନାହିଁ । ବର୍ତ୍ତମାନ ଅଳ୍ପ ସମୟ ପରେ ଏଠାରେ ମୁଁ ଗୋଟି ଏମହତ୍ୱପୂର୍ଣ୍ଣ ଫଟୋ ଉଠାଇବି । ଯଦି ମୁଁ ଏଠାରୁ ତେବେ ଚାଲିଯାଏ, ମୋର ଆସିଷ୍ଟାଣ୍ଟ ନ୍ୟୁଜ ଏଡିଟର ଭାବରେ ଯେ ମୁଁ

ଜାଣିଶୁଣି ଫଟୋ ଉଠାଇନାହିଁ ଏବଂ ତାଙ୍କ ସହିତ ମୋର ମଧ୍ୟ ସେତେ ଭଲ ପଡ଼େ ନାହିଁ ।

"କ ଫଟୋ ତୁମେ ଉଠାଇବ ?

"ତାଜମ୍ମା ଜୁଲୁସର ।"

ଜୁଲୁସତ ବର୍ତ୍ତମାନ ସୁଦ୍ଧା ଦେଖାଯାଉ ନାହିଁ । ତୁମେ ମୋତେ ଟ୍ୟାକ୍ସ ଷ୍ଟାଣ୍ଡ ପର୍ଯ୍ୟନ୍ତ ଛାଡ଼ି ଦେଇ ଆସ । ମୋର ଗୋଡ଼ ଥରୁଛି । ମୋତେ ଭୟଲାଗୁଛି । କଥା କ'ଣ ?

"ମୁଁ.....ମୁଁ ବର୍ତ୍ତମାନ ଗୋଟିଏ ହତ୍ୟା କରିଛି' । "କାହାକୁ"

ସୁଶୀଲ ଚମକି ପଡ଼ିଲା ।

"ହରି ପ୍ରସାଦ ତ୍ୟାଗୀର" ।

"ଓ ମାଇଁ ଗଡ୍ ! କାହିଁକି ?'

ଅଚଳା କିଛି ଉତ୍ତର ଦେଲାନାହିଁ । ସେ ଆଖିବୁଜି ବେହୋଶ ହେଲାପରି ପଡ଼ିଗଲା ।

ସୁଶୀଲ କମର୍ସିଆଲ ଷ୍ଟ୍ରୀଟ୍‌କୁ ଅନେକ ଦୂର ପର୍ଯ୍ୟନ୍ତ ଅନାଇଲା । ଜୁଲୁସ ଆସି ନଥିଲା । ଅଚଳାକୁ କାନ୍ଧରେ ପକାଇ ନେଇ ଟ୍ୟାକ୍ସି ଷ୍ଟାଣ୍ଡ ଆଡ଼କୁ ଗଲା ।

"ଅଚଳା । "ନିଜକୁ ସଯତ କର" ।

ଅଚଳା ଚୁପ୍ ରହିଲା ।

ଅଳ୍ପ ଦୂରରେ ଗୋଟିଏ ରେଷ୍ଟୁରାଣ୍ଟ ଥିଲା । ସୁଶୀଲ ଅଚଳାକୁ ସେଠାକୁ ନେଇଗଲା । ସେ କୋକାକୋଲା ମଗାଇଲା ଜବରଦସ୍ତ ଅଚଳାକୁ ପିଆଇ ପ୍ରକୃତସ୍ଥ ହେବାପରେ ତାକୁ ପଚାରିଲା— ବର୍ତ୍ତମାନ କୁହ, କ'ଣ ଘଟିଛି ?

ଭୟମିଶା ସ୍ୱରରେ କହିଲା—

"କ'ଣ ସେମାନେ ମୋତେ ଫାଶିରେ ଝୁଲାଇବେ ?"

"ପ୍ରଥମେ କୁହ କ'ଣ ହୋଇଛି ?" ସୁଶୀଲ କହିଲା –

''ତୁମେ କ'ଣ କରିଛ ? '

''ମୁଁ କିଛି ସମୟ ପୂର୍ବରୁ ହରି ପ୍ରକାଶ ତ୍ୟାଗୀକୁ ମୋ ବାପାଙ୍କ ରିଭଲଭରରେ ହତ୍ୟା କରିଛି'' ।

—ସେ ଧୀରେ ଧୀରେ କହିଲା ।

'ରିଭଲଭର କେଉଁଠି ଅଛି ?' – ସୁନୀଲ ପଚାରିଲା । 'ସେଠାରେ । ତ୍ୟାଗୀର ଅଫିସରେ । ଶବ ନିକଟରେ 'ତୁମେ କେତେଥର ଫାୟାର କରିଛ ?'

'ଦୁଇ ଥର' ।

''ସେ ତୁମ ସାମନାରେ ପଡ଼ି ମରିଗଲା ?'

'ହଁ । ସେ ପଡ଼ିଯିବାରୁ ମୁଁ ରିଭଲଭର ପକାଇ ସେଠାରୁ ପଳାଇ ଆସିଲି ।

'ତାହାଙ୍କ ଏପରି ହେଲା ?'

ଅଚଳା ଚୁପ ରହିଲା ।

ସୁନୀଲ 'ହଲଚଲ' ବିଷୟରେ ଶୁଣିଥିବା କଥା ମନେପକାଇଲା ।

'କ'ଣ ସେ ତୁମକୁ ବ୍ଲାକମେଲ କରୁଥିଲା ?' —

ସୁନୀଲ ପଚାରିଲା ।

ଅଚଳା ଚମକି ଉଠି ହଁ ଭରିଲା ।

'କିପରି ?' ମୋଟାମୋଟି ଖାଲି କୁହ । ସବୁ କଥା ଶୁଣାଇବା ଦରକାର ନାହିଁ ।

ମୋର କେତେକ ଚିଠି ତା ପାଖରେ ଅଛି । ଯାହାକୁ କି ମୋ ବିରୁଦ୍ଧରେ ବ୍ୟବହାର କରୁଛି । ମୁଁ ଯେତେବେଳେ 'ବ୍ଲାଷ୍ଟ'ରେ ଚାକିରି କରୁଥିଲି, ସେହି ସମୟରେ ତ୍ୟାଗୀ ମଧ୍ୟ ସେଠାରେ ଥିଲା । ସେତେବେଳେ ତା ସହିତ ମୋର ଅଳ୍ପ ବହୁତ ଆଳାପ ହୋଇଥିଲା । ସେଥିପାଇଁ ମୁଁ ଥରେ............

କହିବାକୁ ମୋତେ ଲାଜ ଲାଗୁଛି ।

"ମୂର୍ଖଙ୍କ ପରି କ'ଣ ହେଉଛ । ଶିକ୍ଷିତା ହୋଇ ଗାଉଁଲୀଙ୍କ ପରି କ'ଣ ହେଉଛ । ସମସ୍ତ କଷ୍ଟ ନକରି ଶୀଘ୍ର କୁହ ।

ଥରେ ରବିବାର ଦିନ ମୁଁ ତା ସହିତ ଯାଇ ଗୋଟିଏ ଜଙ୍ଗଲରେ ରହିଥିଲି । ନମାର ସେଠାରେ ସେ କେତେକ ଫଟୋ ଉଠାଇଥିଲା । ସେ ଫଟୋ ଗୁଡ଼ିକ ବିଭିନ୍ନ ପ୍ରକାରର ଥିଲା । ସୁନୀଲ ! ତୁମେ ଜାଣ ମୋର ବିଭାଘର ହେବାର ଅଛି ।

'ପ୍ରକାଶ ସହିତ' ।

'ହଁ । ତ୍ୟାଗୀ ମୋତେ ବର୍ଷେ ହେଲା ଏହା କହି ବ୍ଲାକମେଲ କରୁଛି ଯେ— ଯଦି ତାର ଦାବୀ ପୂରଣ ନ କରିବି, ତେବେ ସେ ପ୍ରକାଶକୁ ସବୁକଥା କହିଦେବ । ପ୍ରକାଶ ଗୋଟିଏ ଧନୀ ଓ ନାମଜାଦା ପରିବାରର ପୁଅ । ଯଦି ତାଙ୍କ ଘରେ କିଏ ଜାଣନ୍ତି, ତେବେ କଦାପି ପ୍ରକାଶ ସହିତ ମୋର ବିବାହ ଦେବାକୁ ସେମାନେ ରାଜି ହେବେ ନାହିଁ ।

'ତା ହେଲେ ଖାଟୀର ମୁହଁ ବନ୍ଦ କରିବା ପାଇଁ ତୁମେ ଏପରି କରିଛ ?'

'ହଁ'

ତା ହେଲେ ତାକୁ ହତ୍ୟା କରିବାର ସୁଯୋଗ କିପରି ପାଇଲ ।

'କାରଣ ସେ ବ୍ଲାକମେଲିଂ ଅର୍ଥ ସବୁ ମୋତେ ମଧ୍ୟ ପାଇବାକୁ ଚାହୁଁଥିଲା । ସେ ଚାହୁଁଥିଲା ଯେ ତା ସହିତ ପୂର୍ବ ଭଳି ବୁଲିବାକୁ ଯାଇ ଥାଆନ୍ତି ।

'ତା ପରେ – ?'

ଆଜି ମୁଁ ମୋ ବାପାଙ୍କର ରିଭଲଭର ନେଇ ତା ଅଫିସକୁ ଯାଇଥିଲି । ରିଭଲଭର ଦେଖାଇ ତାକୁ ଧମକାଇବା ମୋର ଉଦ୍ଦେଶ୍ୟଥିଲା ମୋର ଧାରଣା ଥିଲା ଯେ ମୋର ଧମକରେ ସେ ଡ଼ରି ଚୁପ୍ ହୋଇଯିବ । ଭୟଭୀତ ହେବା ପରିବର୍ତ୍ତେ ସେ ମୋ ଉପରେ ଆକ୍ରମଣ କଲା । ବାଧ୍ୟ

ହୋଇ ମୋତେ ଗୁଳି ଚଳାଇ ବାକୁ ପଡ଼ିଲା ।

'ତୁମେ ଠିକ୍ ଭାବେ ଦେଖିଛ ଯେ ସେ ମରି ଯାଇଛି ।

'ମାନେ ?'

ହୁଏତ ସିଏ ନମରି ପାରିଥାଏ । ହୁଏତ ତୁମର ଚଳାଇଥିବା ଗୁଳି ତାର ଶରୀରର ଏପରି କୌଣସି ଅଙ୍ଗରେ ଲାଗି ପାରିଥାଏ, ଯଦ୍ଦ୍ୱାରା ସେ ଆଘାତ ପ୍ରାପ୍ତ ହୋଇ ପଡ଼ିଯାଇଥିବ ।

ମୁଁ ତ ତାର ନାଡ଼ି ଦେଖିନାହିଁ କିନ୍ତୁ ସେ ନିଶ୍ଚୟ ମରିଯାଇଛି । ସେ ମୋ ସାମନାରେ ଚିତ୍କାର କରି ତଳେ ପଡ଼ି ନିସ୍ତେଜ ହୋଇଗଲା ।

ସୁନୀଲ କିଛି ସମୟ ଚିନ୍ତା କରି କହିଲା— ପ୍ରଥମେ ଦେଖିବାକୁ ପଡ଼ିବ ସେ ମରିଛି କି ନାହିଁ ।

ଅଚଳା ଚୁପ୍ ରହିଲା ।

ଷ୍ଟିଲଭର ସେଠାରେ ଛାଡ଼ି ଆସିବା ତୁମର ଉଚିତ୍ ନଥିଲା । ଶିଭଲଭରରେ ରେଜିଷ୍ଟ୍ରେସନ ନମ୍ବର ଥାଏ ଏବଂ ସେହି ନମ୍ବରର ପୋଲିସ ପାଖରେ ରେକର୍ଡ ଥାଏ । ପୋଲିସ ସହଜରେ ଜାଣିପାରିବ ଯେ ଶିଭଲଭର କାହାର ।

ତେବେ କ'ଣ ମୁଁ ଯାଇ ଶିଭଲଭର ନେଇ ଆସିବି ?

ତୁମ ମନରେ ସାହସ ଅଛି ?

ବର୍ତ୍ତମାନତ ତୁମର ଗୋଡ଼ ଥରୁଥିଲା ।

ଚୁପ୍ ରହିଲା ଅଚଳା ।

'ଉଠ' । ସୁନୀଲ କହିଲା ।

ସେ ତରବର ହୋଇ ଠିଆ ହୋଇଗଲା । ସୁନୀଲ କୋକାକୋଲାର ପଇସା ଦେଇ ତାଙ୍କହାତ ବାହାରକୁ ଚାଲିଆସିଲା ।

ସାମନାରେ ଟ୍ୟାକ୍ସି ଷ୍ଟାଣ୍ଡ ।

ସେ କହିଲା—ସେଠାରୁ ଗୋଟିଏ ଟ୍ୟାକ୍ସି ଭଡ଼ା କରି ଘରକୁ ଚାଲିଯାଅ ।

ମୁଁ ଚ୍ୟାଗୀ ଅଫିସ ପାଖରୁ ବୁଲିଆସେ । ଯଦି ତୁମକୁ କିଛି ଜଣାଇବାକୁ ଦରକାର ହୁଏ ତେବେ ମୁଁ ଫୋନ କରିବି ।

·କିନ୍ତୁ·········ତୁମେ·········· ।

ମୁଁ ଜାଣେ ତୁମେ କ'ଣ କହିବାକୁ ଚାହୁଁଛ । ତୁମେ ମୋ ଚିନ୍ତା ନକର ମୁଁ ଯାହା କହୁଛି ତାହା କର ।

ସେ ସମ୍ମତି ପ୍ରକାଶ କଲା ।

ସୁନୀଲ ଦେଖିଲା ପଟୁଆର ରାସ୍ତା ଉପରକୁ ଚାଲି ଆସିଲାଣି । ଯିବା ପୂର୍ବରୁ ମୋତେ ଗୋଟିଏ କଥା କହିଯାଅ— ସୁନୀଲ କହିଲା ।

ଅଚଳା ଚମକି ଉଠିଲା । ସେ ପ୍ରଶ୍ନ ବାଚକ ଦୃଷ୍ଟିରେ ସୁନୀଲକୁ ଚାହିଁ ରହିଲା ।

"ସୌଭାଗ୍ୟ ବଶତଃ ଏଠାରେ ମୋ ସହିତ ତୁମର ଦେଖାହେଲା ଯଦି ଅନ୍ୟ କୌଣସି ପରିଚିତ ଲୋକ ସହିତ ତୁମର ଦେଖା ହୋଇ ଥାଆନ୍ତା ତେବେ ତୁମେ କ'ଣ ଏହିସବୁ ଘଟଣା ତାକୁ କହିଥାନ୍ତ ?"

'ନା'— ଅଚଳା ଉତ୍ତର ଦେଲା ।

ତେବେ କଣ କରି ଥାଆନ୍ତ ?

ଚୁପଚାପ ଘରକୁ ଚାଲିଯାଇ ଥାଆନ୍ତି ଏବଂ ପୋଲିସ ଅପେକ୍ଷାରେ ଥାଆନ୍ତି ।

ମୋତେ କାହିଁକି ସବୁକଥା କହିଲ ?

'ଜାଣେ ନାଁ । ତୁମର ଚେହେରା ଦେଖି କାହିଁକି କେଜାଣି ସବୁ-କଥା ମୋ ମୁହଁରୁ ବାହାରି ଆସିଲା ।

'ଆଚ୍ଛା । ବର୍ତ୍ତମାନ ଯାଅ ।,

ସେ ଟ୍ୟାକ୍ସି ଷ୍ଟାଣ୍ଡ ଆଡ଼କୁ ଚାଲିଗଲା ।

ପୂର୍ବରୁ ସୁନୀଲ ଯେଉଁଠାରେ ଠିଆ ହୋଇଥିଲା ଜୁଲୁସ ସେ ପର୍ଯ୍ୟନ୍ତ ପହଞ୍ଚି ଯାଇଥିଲା ।

ସେ ତରବର ହୋଇ ସିଡ଼ି ଉପରକୁ ଉଠି ଫଟୋ ଉଠାଇବା ପାଇଁ କ୍ୟାମେରା ଧରି ଠିଆ ହୋଇ ପଡ଼ିଲା ।

ଯେତେବେଳେ ସୁଇଚ୍ ଟିପୁଥିଲା, ସେହି ସମୟରେ ଶ୍ରୀ ନିବାସ ହାଉସର ମୁଖ୍ୟ ଦ୍ୱାରରୁ ଜଣେ ଲୋକ ଗୋଟିଏ ସୁନ୍ଦରୀ ସ୍ତ୍ରୀ ସହ ବାହାରକୁ ଆସୁଥିଲେ । ଲୋକର ନାମ କେଦାରନାଥ ସେ ଗୋଟିଏ ପ୍ରାଇଭେଟ ଡ଼ିଟେକ୍ଟିଭ ଏଜେନ୍ସି ଚଳାଉଥିଲା ଏବଂ ଶ୍ରୀ ନିବାସ ହାଉସରେ ତାର ଅଫିସ ଥିଲା । ମହିଳାର ନାମ ଦମୟନ୍ତୀ ଯୋଶୀ ସେ ମୋହନ ଲାଲ ଯୋଶୀ ନାମକ ଜଣେ ଜୁଆଡ଼ିର ସ୍ତ୍ରୀ ।

ଶ୍ରୀ ନିବାସ ହାଉସରେ ସାମନା କୋଠାରୀରେ ଗୋଟିଏ ଦୁଆର ମୁହଁରେ ମୋହନଲାଲ ଯୋଶୀ ଠିଆହୋଇ କେଦାର ନାଥ ଓ ନିଜ ପତ୍ନୀକୁ ଦେଖୁଥିଲା ।

ଶ୍ରୀ ନିବାସ ହାଉସର ଆରପଟ କୋଠାରୁ ଗୋଟିଏ ଝିଅ ସହିତ ଜୀବନ ମାଲହୋତ୍ରା ବାହାରୁଥିଲେ । ସେ ଜଣେ ଆର୍ଟିଷ୍ଟ ଥିଲେ ଏବଂ ତାଙ୍କ ସହିତ ଥିବା ଝିଅଟି ବୋଧହୁଏ କୌଣସି ମଡେଲ ଝିଅ ଥିଲା ।

ସେହି ସମୟରେ ଜୁଲୁସ ସେଇବାଟ ଦେଇ ଗଲା ଏବଂ ଇଚ୍ଛା ଥିଲେ ମଧ୍ୟ ସେ ଫଟୋ ଉଠାଇ ପାରି ନଥିଲା ।

ସେ ହାତରେ ବାନ୍ଧିଥିବା ଘଣ୍ଟା ଉପରେ ଦୃଷ୍ଟିପାତ କଲା ।
ଠିକ୍ ଦୁଇଟା ବାଜିଯାଇଥିଲା ।

ତଳେ ଠିଆହୋଇ କେତେକ ଲୋକ ସୁନୀଲ ଫଟୋ ଉଠାଇବାର ଦେଖିଥିଲେ । ସେ ଅନୁଭବକଲା ଯେ ସେ ସ୍ଥାନର ଫଟୋ ଉଠାଇବାର ସେ ବୋଧହୁଏ ଏକମାତ୍ର ଫଟୋ ଗ୍ରାଫର ।

ସେହି ସମୟରେ ସେ ଅଚଳାକୁ ଦେଖି ପାରିଲା । ସେ ଗୋଟିଏ ଟ୍ୟାକ୍ସିର ଖୋଲା କବାଟ ପାଖରେ ଠିଆ ହୋଇଥିଲା ।

ସୁନୀଲ ରାଗି ଉଠିଲା । ସେ ଝିଅ କାହିଁକି ଏ ପର୍ଯ୍ୟନ୍ତ ଯାଇନାହିଁ ଓ ଏ ପର୍ଯ୍ୟନ୍ତ ସେଠାରେ କଣ କରୁଥିଲା ।

ସେ କ୍ୟାମେରା କାନ୍ଧରେ ଝୁଲାଇ ତଳକୁ ଆସିଲା ।

ସେ ଟ୍ୟାକ୍ସି ପାଖରେ ପହଞ୍ଚିଲା ବେଳକୁ ଅଚଳା ଟ୍ୟାକ୍ସି ସିଟ ବସିବାକୁ ଯାଉଥିଲା ।

ତୁମେ ଏତେବେଳପର୍ଯ୍ୟନ୍ତ ଏଠାରେ କ'ଣ କରୁଛ ? ସୁନୀଲ ରାଗିଯାଇ କହିଲା ।

ଅଚଳା କହିଲା – 'ସୁନୀଲ ମୁଁ ଭାବଲି ବୋଧହୁଏ' ।

–'ତୁମେ କଥା ବନ୍ଦ କର । ଶୀଘ୍ର ଏଠୁ ଚାଲିଯାଅ । ଏ ସମୟରେ କମର୍ସିଆଲ ଷ୍ଟ୍ରୀଟରେ ତୁମେ ରହିବା ଉଚିତ୍ ନୁହେଁ । କେହି ଯେପରି ନ ଜାଣନ୍ତି ଯେ ଘଟଣା ସମୟରେ ତୁମେ କମର୍ସିଆଲ ଷ୍ଟ୍ରୀଟରେ ଉପସ୍ଥିତ ଥିଲ—" ସୁନୀଲ କହିଉଠିଲା ।

ତାପରେ ଅଚଳା ଟ୍ୟାକ୍ସିରେ ବସି ଚାଲିଗଲା ।

ଫୁଟପାଥରେ ଚାଲିଚାଲି ସୁନୀଲ ଶ୍ରୀ ନିବାସ ହାଉସ୍ ଆଡ଼କୁ ଗଲା ।

ଏତିକିବେଳେ ଦୁଇ ପଟୁ ଦୁଇ ଜଣ ଲୋକ ସୁନୀଲ ଆଡ଼କୁ ଚାଲିଆସିଲେ । ଜଣେ ଶିଙ୍ଗ ଫ୍ରେମର ଚଷମା ପିନ୍ଧିଥିଲା । ବେଶ ସୁସ୍ଥ ସବଳ ଚେହେରା ସେ ଗୋଟିଏ ଭଲ ସୁଟ୍ ମଧ୍ୟ ପିନ୍ଧିଥିଲା ଏବଂ ଫ୍ରେନ୍‌ଚ-କଟ ଦାଢ଼ି ରଖିଥିଲା । ଅନ୍ୟ ଜଣକର ବୟସ ପ୍ରାୟ ୪୦ ବର୍ଷ ଏବଂ ଦୀର୍ଘ-କାୟ ବ୍ୟକ୍ତି । ଦୁଇଜଣ ସୁନୀଲର ରାସ୍ତା ପ୍ରତିରୋଧ କରିବାକୁ ବ୍ୟଗ୍ର ଥିଲେ । ଫ୍ରେନ୍‌ଚକଟ ଦାଢ଼ି ଥିବା ଲୋକ ସୁନୀଲ ପାଖରେ ଅଳ୍ପ ସମୟ ପୂର୍ବରୁ ପହଞ୍ଚିଲା । ଅନ୍ୟ ଜଣକ ତା ପାଖରେ ଠିଆ ହୋଇଗଲା ।

ଆଜ୍ଞା ଟିକିଏ ଶୁଣନ୍ତୁ— ଫ୍ରେନ୍‌ଚକଟ ଦାଢ଼ି ଥିବା ଲୋକ ସୁନୀଲକୁ କହିଲା— ମୁଁ ବର୍ତ୍ତମାନ ଆପଣଙ୍କୁ ଫଟୋ ଉଠାଉ ଥିବାର ଦେଖିଥିଲି । ଆପଣ କ'ଣ କୌଣସି ପ୍ରେସ ଫଟୋ ଗ୍ରାଫର ?

ସୁନୀଲ କହିଲା— ହଁ ।

ଆପଣ ବହୁତ ଉଚ୍ଚ ସ୍ଥାନରେ ଠିଆ ହୋଇ ଫଟୋ ଉଠାଉଥିଲେ, ତେଣୁ ମୋର ଫଟୋ ମଧ୍ୟ ସେଥିରେ ଉଠିଯାଇଥିବ । ସେହି ଫଟୋ ପ୍ରିଣ୍ଟ ସମୟରେ ଯଦି ମୋର ଫଟୋଟା ବାଦ ଦେଇ ଦେବେ ଖୁବ୍ ଭଲ ହେବ । ଆପଣଙ୍କର ତ ଘଟଣାର ଫଟୋ ଦରକାର ।

ସୁନୀଲ କହିଲା — ମୁଁ ଆଶା କରୁ ନାହିଁ ଯେ ଆପଣଙ୍କର ଫଟୋ

ମୁଁ ଉଠାଇଥିବି ।

ମାତ୍ର ମୁଁ ଜାଣେ ଯେ ମୋ ଫଟୋ ସେଥିରେ ନିଶ୍ଚିତ ଭାବେ ଛପିଛି ।

ତା ହେଲେ କ୍ଷତି କ'ଣ ? ଲୋକେ ଖବର କାଗଜରେ ନିଜ ଫଟୋ ବାହାରିକରିବା ପାଇଁ ଆଗ୍ରହ ପ୍ରକାଶ କରନ୍ତି, ଆଉ ଆପଣ ମନା କରୁଛନ୍ତି କାହିଁକି ?

"ଦେଖନ୍ତୁ, ମୋ କଥା ବୁଝିବାକୁ ଚେଷ୍ଟାକରନ୍ତୁ । ମୋର କଥା ରକ୍ଷାକରନ୍ତୁ ।"

"ମୋତେ ବର୍ତ୍ତମାନ ସମୟ ନାହିଁ । ମୋର ନାମ ସୁଶୀଲ ମୁଁ ଦୈନିକ 'ବ୍ଲାଷ୍ଟ'ର ପ୍ରତିନିଧି । ସନ୍ଧ୍ୟାବେଳେ ଆପଣ ଅଫିସକୁ ଆସିବେ, କଥାବର୍ତ୍ତା ହେବା ।"

ଦ୍ୱିତୀୟ ଲୋକ କ'ଣ କହିବାକୁ ଚାହୁଁଥିଲା । କିନ୍ତୁ ସୁଶୀଲ ଦୁଇଜଣଙ୍କୁ ଠେଲି ଦେଇ ଲିଫ୍ଟ ଦ୍ୱାରା ତିନି ମହଲା ଉପରକୁ ଉଠିଗଲା । ଡାହାଣ ପଟର ଚାରୋଟି ଫ୍ଲାଟ ଭଡା ଦିଆ ଯାଇ ନଥିଲା । ବାମ ପଟର ପ୍ରଥମ ଓ ଦ୍ୱିତୀୟ ଫ୍ଲାଟ ତ୍ୟାଗୀର ଅଧୀନରେ ଥିଲା । ତୃତୀୟ ଫ୍ଲାଟ ଖାଲିଥିଲା ଏବଂ ଚତୁର୍ଥ ଫ୍ଲାଟରେ କେଦାର ନାଥଙ୍କର ' ନେମ ପ୍ଲେଟ ଝୁଲୁଥିଲା ।

ସୁଶୀଲ ବାମପଟ ଦୁଆର ମୁହଁରେ ପହଞ୍ଚିଲା ଓ ସେ କବାଟ ଖୋଲିଥିଲା । ସେ ଶୀଘ୍ର ଘର ଭିତରକୁ ପଶି କବାଟ ବନ୍ଦ କରିଦେଲା ।

ସାମନାରେ ତ୍ୟାଗୀର ଶବ ପଡ଼ିଥିଲା । ତାର ଗୋଡ କବାଟ ଆଡ଼କୁ ଲମ୍ବିଥିଲା ଏବଂ ମୁଣ୍ଡ ଅନ୍ୟ ପଟକୁ ଗୋଟିଏ ବଡ ଟେବୁଲ ପାଖରେ ଥିଲା । ତାର ଚେହେରାରେ ଆତଙ୍କ ପରିବର୍ତ୍ତେ ବ୍ୟସ୍ତତାର ଭାବ ପରିଲକ୍ଷିତ ହେଉଥିଲା ।

ଗୁଳିର ଚକ୍ର ତାର ଗୃହରେ ଥିଲା । ସେଥିରୁ ବାହାରିଥିବା ରକ୍ତରେ ତାର ଲୁଗାପଟା ଲାଲ ହୋଇ ଯାଇଥିଲା ।

ସୁଶୀଲ ଗୁମ୍ଫଆଡ଼େ ଆଖି ବୁଲାଇଲା । ଯେଉଁ ଟେବୁଲ ପାଖରେ ଖାଗୀର ଶବ ପଡ଼ିଥିଲା ତା ପାଖକୁ ଲାଗି ତ଼ୁ ଥିବା ଫାଇଲିଙ୍ଗ କ୍ୟାବିନେଟ ଥିଲା ।

ସେହି ଘରର ବାମ ଓ ଡାହାଣ ପଟେ ଗୋଟିଏ ଗୋଟିଏ କବାଟ ଥିଲା ।

ସୁଶୀଲ ବାମପଟ କୁଆଡ଼ି ମୁହଁରେ ଯାଇ ପ୍ରଥମେ ଅଫିସରେ ପହଞ୍ଚିଲ ।

ତାହା ଖାଗୀର ପ୍ରାଇଭେଟ ଅଫିସ ଏବଂ ଯେଉଁଠାରେ ବହୁମୂଲ୍ୟ ଫର୍ଣ୍ଣିଚର ସଜା ହୋଇଥିଲା । ସେଠାରେ ଗୋଟିଏ ବଡ଼ ଟେବୁଲ ଓ ରିଭଲଭିଂ ଚେୟାର ଆଉ ଦୁଇଟି ସ୍ପଞ୍ଜ ଗଦି ଥିବା ଦୁଇଟି ଚେୟାର ଥିଲା । ଅନ୍ୟପଟେ ଗୋଟିଏ କପବୋର୍ଡ ଥିଲା, କିନ୍ତୁ ରିଭଲଭର ସେଠାରେ ନଥିଲା ।

ସୁଶୀଲ କ୍ୟାମେରାରେ ଶବର ଫଟୋ ଉଠାଇଲା ।

ଶବ ନିକଟକୁ ଆସି ଠିଆହେଲା ।

ରିଭଲଭର ଶବ ତଳେ ଥାଇପାରେ ।

ସେ ଶବ ନିକଟରେ ବସି ପଡ଼ିଲା ।

ସେ ତ୍ୟାଗୀ କୋଟର ଗୋଟିଏ କୋଣଧରି ଉପରକୁ ଉଠାଇଲା, ରିଭଲଭର ସେଠାରେ ନଥିଲା । କୋଟ ଟିକିଏ ଜୋରରେ ଟାଣି ହୋଇ ଯିବାରୁ ଶବ ଟିକିଏ ହଲିଗଲା । ସୁଶୀଲ ଡରିଯାଇ ଟିକିଏ ଘୁଞ୍ଚିଗଲା ।

ଶବ ତଳୁ ମଧ୍ୟ ରିଭଲଭର ମିଳିଲାନାହିଁ । ସେ ଫାଇଲିଙ୍ଗ କ୍ୟାବିନେଟ ଉପରକୁ ଯାଇ ଶବର ବିଭିନ୍ନ ପ୍ରକାର ଫଟୋ ଉଠାଇଲା ।

'ଖାଗୀ' ସେହି ସମୟରେ ଖୁବ୍ ଧୀରଭାବେ ଗୋଟିଏ ଶବ୍ଦ ଶୁଣିଲା । ସେ ସ୍ଥିର ହୋଇ ଠିଆ ହୋଇଗଲା ଓ କାନ ପାରି ଶୁଣିଲା । ଆଉ କୌଣସି ଶବ୍ଦ ଶୁଭୁନାହିଁ ମାତ୍ର କୌଣସି କବାଟ ଧୀରେ ଧୀରେ ବନ୍ଦ ହେବାର ଶବ୍ଦ ସେ ଶୁଣିଥିଲା ।

ସୁନୀଲ ଗଳିଆଖ କବାଟ ଫିଟାଇ ବାହାର ଗଳିକୁ ଦେଖିଲା ।

ଗଳି ଖାଲିଥିଲା ।

ଲିଫ୍‌ଟର କବାଟ ଖୋଲା ଥିଲା ଏବଂ ସେ ସେହିଠାରେ ଥିଆ ହୋଇଥିଲା । ସେ ଡେଇଁପଡ଼ି ସିଡ଼ି ପାଖକୁ ଆସିଲା ।

ସିଡ଼ି ପାଖ ଶୁନ୍‌ଶାନ୍ ଥିଲା । ସେ ପୁଣି ଗଳି ପାଖକୁ ଫେରିଆସିଲା ଏବଂ ଡାହାଣପଟ ଗୃହଟି ଖାଲି ଅଫିସ କବାଟ ଦେଖିଲା; ଯାହାକ ବନ୍ଦ ଥିଲା । ବାମପଟ ଖାଲି ଅଫିସର କବାଟ ମଧ୍ୟ ବନ୍ଦ ଥିଲା ସେ କେଦାର ନାଥଙ୍କ ଅଫିସ ଦୁଆର ମୁହଁରେ ପହଞ୍ଚିଲା । କେଦାରନାଥ କିଛି ସମୟ ପୂର୍ବରୁ ବାହାରକୁ ଯିବାର ସେ ଦେଖିଥିଲା, ତେଣୁ ଭାବିଲା ବୋଧହୁଏ କବାଟ ବନ୍ଦ ଥିବ । ସେ କବାଟ ହ୍ୟାଣ୍ଡଲ ଧରି ଖୋଲିବାକୁ ଚେଷ୍ଟା କରି କବାଟ ବନ୍ଦ ଥିବାର ଦେଖିଲା ।

ତ୍ୟାଗୀ ଏବଂ କେଦାରନାଥ ଅଫିସ ମଧ୍ୟରେ ଖାଲି ଅଫିସର କବାଟ ଖୋଲିବାକୁ ଚେଷ୍ଟା କଲା, ତାହା ମଧ୍ୟ ବନ୍ଦ ଥିଲା ।

ସେ ଭାବିଲା, ସେ କ'ଣ କିଛି ଶବ୍ଦ ଶୁଣି ଥିଲା ନା ତାଙ୍କୁ ସେପରି ଜଣା ପଡ଼ିଲା ।

ସେ ତ୍ୟାଗୀର ଅଫିସକୁ ଫେରିଗଲା । ସେ ଭିତର କବାଟ ବନ୍ଦ କରିଦେଲା ଏବଂ ଟେଲିଫୋନ ଆଡକୁ ଅଗ୍ରସର ହେଲା ।

ସେ ୟୁଥ କ୍ଲବକୁ ଟେଲିଫୋନ କଲା । ତାର ସାଥି ରମାକାନ୍ତ ସେତେବେଳେ ଶୋଇ ନଥିଲା; କାରଣ ଶୋଇବାଠାରୁ ତାକୁ ଉଠାଇଲେ ସେ ଚିଡ଼ଚିଡ଼୍ ହୁଏ ।

'ସୁନୀଲ କହୁଛି'—

ରମାକାନ୍ତ କହିଲା – କହ ଶଳା ! କେଉଁଠୁ ଫୋନ କରୁଛୁ ? ଗୋଟିଏ କାମ କରିବୁ ?

'ମାଗଣା' ?

'ହଁ ।'

ବର୍ତ୍ତମାନ ମିଳିବନି ନାଁ। ପରେ ମଧ୍ୟ କିଛି ମିଳିବ ନାହିଁ ।
ରମାକାନ୍ତ ପଗ୍ଭରିଲା –

ନାଁ। କଦାପି ମିଳିବ ନାହିଁ ।

ରମାକାନ୍ତ କହିଲା – ଆଚ୍ଛା କାମ କ'ଣ ?

ତୁ କୌଣସି ଲୋକକୁ କମର୍ସିଆଲ ଷ୍ଟ୍ରିଟର ଶ୍ରୀନିବାସ ହାଉସକୁ ପଠାଇ ପାରିବୁ ?

କେତେବେଳେ ?'

ବର୍ତ୍ତମାନ ।ସାଙ୍ଗେ ସାଙ୍ଗେ ।

ଏତିକି କାମ ?

ହଁ ।

ସେ କ'ଣ କରିବ ?

ଅଳ୍ପ ସମୟ ନଜର ରଖିବ ।

ଓ – କେ । ଜୋହରା ଏଠାରେ ଅଛି। ମୁ ପଠାଇ ଦେଉଛି ।

ଧନ୍ୟବାଦ—

ତାକୁ କହିବୁ ତଳ ମହଲା ଉପରକୁ ଚାଲି ଆସିବ ।

—'ଠିକ୍ ଅଛି' ।

ସୁଶୀଲ ରସିଭର ରଖି ଦେଲା ।

ସୁଶୀଲ ଶେଷଥର ପାଇଁ ଘରଆଡେ ଆଖି ବୁଲାଇ ନେଲା ଏବଂ ବାହାରକୁ ବାହାରି ଆସିଲା । ତାପରେ କବାଟ ବନ୍ଦ କରିଦେଲା ।

ବର୍ତ୍ତମାନ ତା ଆଗରେ ବଡ ସମସ୍ୟା ଯେ କିପରି ପୁଲିସ କାନକୁ ଏ ସମ୍ବାଦ ଯିବ ?

କଥାଟିଲୁଚାଇ ରଖି ହେବ ନାହିଁ । କାରଣ ସେହି ହତ୍ୟା ଘଟଣା ଜାଣିଥିବା ପ୍ରଥମ ଅଚଳା ଏବଂ ଅନ୍ୟ ଜଣେ ଯେକି ପିସ୍ତଲ ଉଠାଇ ନେଇ ଯାଇଥିଲା ।

ଅଳ୍ପ ସମୟ ପୂର୍ବରୁ ଯେ ଯେଉଁ ଶବ୍ଦ ଶୁଣି ଥିଲା ତାହା ମଧ୍ୟ ସେ ଭୁଲି ପାରୁନି ।

ଜୋହରା ସେଠାରେ ପହଞ୍ଚିଲା ଓ ସେ ପଚାରିଲା—

'କ'ଣ ଦରକାର ?'

ସୁନୀଲ କହିଲା—ଏଇଟା ହରପ୍ରକାଶ ତ୍ୟାଗୀଙ୍କର ଅଫିସ । ସେ ଭିତରେ ମରି ପଡ଼ିଛନ୍ତି । ତାଙ୍କୁ ହତ୍ୟା କରାଯାଇଛି । କେହି ଜଣେ 'ବ୍ଲାଷ୍ଟ' ଅଫିସରୁ ଫୋନକରି ମୋତେ ହତ୍ୟାର ସୂଚନା ଦେଇଥିଲେ । ଅଳ୍ପସମୟ ପରେ ମୁଁ ପୋଲିସରେ ଖବର ଦେଇଦେବି, ପୋଲିସ ଏଠାରେ ପହଞ୍ଚିବା ପର୍ଯ୍ୟନ୍ତ ତୁମେ ଏହି ସ୍ଥାନରେ ଲକ୍ଷ୍ୟ ରଖିଥିବ । ତାପରେ ଯଦି ଏଠାରେ ଅନ୍ୟକିଛି ସନ୍ଦେହାତ୍ମକ ଘଟଣା ଘଟେ ମୋତେ ଖବର ଦେବ ।

'ଠିକ୍ ଅଛି' ଜୋହରୀ କହିଲା ।

ସୁନୀଲ ଚାଲିଗଲା ।

ଟ୍ୟାକ୍ସିରେ ଯାଇ 'ବ୍ଲାଷ୍ଟ' ଅଫିସରେ ପହଞ୍ଚି ନିଜ ରୁମ୍‌ରେ ବସିଲା । କ୍ୟାମେରା ଖୋଲି ଦେହରୁ ରୋଲ ବାହାର କରିନେଲା । ସେହି ସମୟରେ ରୁମ୍‌ର କବାଟ ଖୋଲି ନିମାଣୀ ସାହେବ ଭିତରକୁ ପ୍ରବେଶ କଲେ ।

ସେ 'ବ୍ଲାଷ୍ଟ'ର ଆସିଷ୍ଟାଣ୍ଟ ନିଉଜ ଏଡ଼ିଟର । ନ୍ୟୁଜ ଏଡ଼ିଟର ରାସ୍ତ ଛୁଟିରେ ଥିବାରୁ ତାଙ୍କ କାମ ସେ କରୁଥିଲେ । ସୁନୀଲ ତାକୁ ଭଲ ପାଉ ନ ଥିଲା । ରାସ୍ତଙ୍କ ଅନୁପସ୍ଥିତିରେ ସେ ସୁନୀଲକୁ ଏତେ ହଇରାଣ କରୁଥିଲା ଯେ, ଯାହାଫଳରେ ସୁନୀଲ 'ବ୍ଲାଷ୍ଟ' ଚାକରୀରୁ ଇସ୍ତଫା ଦେଇ-ଥିଲା । ପରେ ମାଲିକ ବୁଝାଇବା ପରେ ଇସ୍ତଫାପତ୍ର ଫେରାଇ ନେଇଥିଲା । ତାପରେ ମଧ୍ୟ ମନିଷ୍ପରଣିଆ ଦେଖାଇ ସେ ମାଲିକକୁ କହିଥିଲା ଯେ ଏହି କାରଣ ପାଇଁ ନିମାଣୀକୁ ଚାକରୀରୁ ବାହାର କରନ୍ତୁନାହିଁ । ନିମାଣୀର ଚାକରୀ ରହିଗଲା । ତାପରେ ନିମାଣୀ ସୁନୀଲକୁ ଭୟ କରିବାକୁ ଲାଗିଲା ଏବଂ ସୁନୀଲ ବିରୁଦ୍ଧରେ ଖୋଲାଲି ନାହିଁ । ଦରକାର ପଡ଼ିଲେ ସୁନୀଲକୁ ପାଖକୁ ନ ଡାକି ନିଜେ ଉଠି ସୁନୀଲ ପାଖକୁ ନିମାଣୀ ସାହେବ ଯାଆନ୍ତି ।

ସୁନୀଲ – ତୁମେ କୁଆଡେ ଯାଉଛ କି ? ବର୍ତ୍ତମାନ ଗୋଟିଏ ସମ୍ବାଦ ମିଳିଛି ।

ସୁନୀଲ ପଚାରିଲା – 'କି ଖବର ?'

ଏଠାରୁ ଗୁଲ ରାସ୍ତାରେ କହିବ ।

କ୍ୟାମେରା ନେଇଯିବ ?

'ହୁଁ' ।

ସୁନୀଲ କ୍ୟାମେରା ନେଇ ବାହାରିଲା । ଦୁହେଁ ତଳକୁ ଆସି ଟ୍ୟାକ୍‌ସିରେ ବସିଲେ । କିମାଣି ଟ୍ୟାକ୍‌ସିକୁ କମର୍ସିଆଲ ଷ୍ଟ୍ରୀଟ୍‌କୁ ଯିବାକୁ କହିବାରୁ ସୁନୀଲ ମନରେ ସନ୍ଦେହ ହେଲା ।

କ'ଣ ଖବର ? ସୁନୀଲ ପଚାରିଲା ।

ବର୍ତ୍ତମାନ ମୁଁ ଶୁଣିଲି ଯେ ହରପ୍ରକାଶ ତ୍ୟାଗୀକୁ କିଏ ଗୁଳି ମାରି ହତ୍ୟା କରିଛି । ତ୍ୟାଗୀ ପୂର୍ବେ 'ବ୍ଲାଷ୍ଟ'ର ଷ୍ଟାଫ ଥିଲା । ମୋର ତା' ସହିତ ଖୁବ୍ ବନ୍ଧୁତା ଥିଲା । ସେଥିପାଇଁ ମୁଁ ଯାଉଛି ।

ଓ.............।

ଦୁଃଖର ବିଷୟ ମୁଁ ଘଣ୍ଟାଏ ପୂର୍ବରୁ ତା ଅଫିସରେ ତା ସହିତ ଦେଖା କରିଆସିଲି ।

ଆଚ୍ଛା ! ପୁଲିସକୁ ଖବର ଦିଆଯାଇଛି ?

ମୁଁ ଖବର ପାଇବା ସାଙ୍ଗେ ସାଙ୍ଗେ ପୋଲିସ ହେଡ଼କ୍ୱାର୍ଟରକୁ ଫୋନ କରିଥିଲି; ଆମ ପହଞ୍ଚିବା ପୂର୍ବରୁ ବୋଧହୁଏ ପୋଲିସ ସେଠାରେ ପହଞ୍ଚି ଯାଇଥିବ ।

ତୁମେ ଖବର କିପରି ପାଇଲ ?

ଅଫିସକୁ କେହି ଜଣେ ଫୋନ କରିଥିଲା ।

କିଏ ?

ଜାଣେ ନାହିଁ । କୌଣସି ଝିଅ ଫୋନ କରିଥିଲା । ସେ କହିଲା ହରପ୍ରକାଶ ତ୍ୟାଗୀଙ୍କୁ ତାଙ୍କ ଅଫିସରେ ହତ୍ୟା କରାଯାଇଛି ଏବଂ ତାପରେ କଲିଙ୍ଗ କାଟିଦେଲା । ଏ ଘଟଣା ମିଛ ମଧ୍ୟ ହୋଇ ପାରିଥାଏ । ପ୍ରକୃତ ଘଟଣା ସେଠାକୁ ଗଲେ ଜଣାପଡ଼ିବ ।

ତୁମେ ଯେତେବେଳେ ତ୍ୟାଗୀର ଅଫିସକୁ ଯାଇଥିଲ ସେ କୌଣସି

ପ୍ରକାର ଚିନ୍ତିତ ଥିବାର ଲକ୍ଷ୍ୟ କରିଥିଲ କି ?

ନାଁ । ସେ ମୋ ସହିତ ହସ ଖୁସିରେ କଥାବାର୍ତ୍ତା କଲେ । ମୁଁ ତାଙ୍କୁ କହିଲି ଆଜି ସନ୍ଧ୍ୟାରେ ଆସି ମାଲିକଙ୍କ ସହିତ ନିଜେ କଥାବାର୍ତ୍ତା ହେବ । ତା'ପରେ ମୁଁ ଫେରି ଆସିଲି । ମୁଁ ତାଙ୍କ ଅଫିସରୁ ବାହାରକୁ ଆସିବାବେଳେ ଅଚଳାକୁ ତା ଅଫିସକୁ ଯିବାର ଦେଖିଥିଲି ।

ସୁଶୀଲ ନ ଜାଣିଲା ପରି ପଚାରିଲା, କେଉଁ ଅଚଳା ?

ଆରେ ଭାଇ ଅଚଳା ମଜୁମଦାର । ମାଲିକଙ୍କ ସାଙ୍ଗ ଏ. କେ. ମଜୁମଦାରଙ୍କ ଝିଅ । ସେ 'କ୍ଳାଷ୍ଟ'ରେ କିଛିଦିନ କାମ କରିଥିଲା । କ'ଣ ଭୁଲିଗଲ ?

ଓଃ............ସେ ।

ହଁ, ସେଇ ।

ସୁଶୀଲ ମନରେ ଭୟ ହେଲା । ଯେପରି ନିର୍ମାଣୀ ଦେଖିଥିଲା । ସେପରି ଆଉକେହି ଅଚଳାକୁ ତ୍ୟାଗୀର ଅଫିସ ଯିବାର ଦେଖିନାହାନ୍ତି ତ ? ସେ ନିର୍ମାଣୀକୁ ପଚାରିଲା ଏ କଥା ତୁମେ ପୋଲିସକୁ କହିବ ?

ନିର୍ମାଣୀ କହିଲା—ନାଁ । ନାହିଁକି ବିଚରା ଝିଅଟିକୁ ହତ୍ୟାକାଣ୍ଡ ମାମଲାରେ ସମ୍ପୃକ୍ତ କରିବ । ସେ ଆମ ଷ୍ଟାଫ୍‌ରେ ମଧ୍ୟ ଥିଲା ଏବଂ ଖୁବ୍ ଭଲ ଝିଅଟିଏ । ତ୍ୟାଗୀ ହତ୍ୟାରେ ବା ତାର ସମ୍ବନ୍ଧ କ'ଣ ? ମୁ କିଛି କହିବି ନାହିଁ । ଯଦି ପୋଲିସ ଜାଣିବ ତ ଜାଣିବ ।

ସୁଶୀଲ ଶାନ୍ତିରେ ନିଶ୍ୱାସ ମାରିଲା । ତା'ର ମନୋଭାବକୁ ଲୁଚାଇବା ପାଇଁ ସିଗାରେଟ ଖଣ୍ଡେ ଟାଣିଲା ।

ତୁମେ କ'ଣ ଭାବୁଚ ? ନିର୍ମାଣୀ କହିଲା – ଝିଅ ବିଷୟରେ କିଛି କହିବା ଉଚିତ୍ ନୁହେଁ ।

ହଁ – ସୁଶୀଲ କହିଲା— ନାହିଁକି ବିଚରା ଝିଅଟିକୁ ଏ ଜଂଜାଳରେ ପୁରାଇବା ?

ପୋଲିସ ଘଣ୍ଟାଏ ସ୍ଥଳରେ ପହଞ୍ଚି ସାରିଥିଲେ । ଇନ୍‌ସ୍ପେକ୍ଟର ପ୍ରଭୁ ଦୟାଳ ନାଜର ଦଳ ସହିତ ତ୍ୟାଗୀର ଅଫିସରେ ଉପସ୍ଥିତ ଥିଲେ । ନିର୍ମାଣୀ ସିଧା ସେଠାକୁ ଗଲା । ସୁଶୀଲ ଗଲା ପାଖରେ ରହି ଚାରିଆଡକୁ ଦେଖୁଥିଲା, ଜୋହରୀ ସିଡ଼ି ପାଖରେ ତାକୁ ଖୋଜି ରହିଥିଲା । ସୁଶୀଲ ତାକୁ ତଳ ସଡ଼କରେ ଚାଲିଯିବାକୁ ସଂକେତ ଦେଲା ।

ସୁଶୀଲ ଅନ୍ୟ ଦୁଆର ମୁହଁ ବାଟେ ତ୍ୟାଗୀ ଅଫିସ ଭିତରକୁ ଆସିଲା । ସେଠାରେ ସବୁ ପୂର୍ବପରି ପଡ଼ିରହିଥିଲା । ସେ ଟିକିଏ ଆଗକୁ ବଢ଼ିଲା ।

ଚେୟାର ପାଖରେ ଗୋଟିଏ ଜିନିଷ ଦେଖି ସେ ଚମକି ପଡ଼ିଲା । କ'ଣ ଏହି ଶଭଲଭର ଯାହାକି ସୁଶୀଲ ଦେଖି ପାରି ନଥିଲା । ପାଖକୁ ଯାଇ ଦେଖିଲା ଯେ ତାହା ଶଭଲଭର ନୁହେଁ । ତାହା ଚାରିକୋଣିଆ ମେକ୍‌ଅପ୍ ବାକ୍‌ସ । ସେହି ବାକ୍‌ସକୁ ଝିଅମାନେ ନିଜ ବ୍ୟାଗରେ ମେକ୍‌ଅପ ପାଇଁ ରଖନ୍ତି । କାହାରି ଆଖି ବୋଧହୁଏ ତା' ଉପରେ ପଡ଼ି ନାହିଁ ।

ମନେହୁଏ ସେଇଟି ଅଚଳାର ଜିନିଷ ।

ସେ ଧୀରେ ଧୀରେ ସେଇ ଚେୟାର ଆଡକୁ ଆଗେଇଲା ।

କିନ୍ତୁ ସେତେବେଳକୁ ପ୍ରଭୁ ଦୟାଳ ନାଜର ତା' ଉପରେ ପଡ଼ି ସାରିଥିଲା । ସେ ଆଗକୁ ଯାଇ ସେଇଟିକୁ ଉଠାଇ ନେଲେ ଏବଂ ନିରୀକ୍ଷଣ କରିନେଲେ ।

ସେହି ଫ୍ଲେଟ ବାକ୍‌ସ ଉପରେ ଏ. ଏମ୍ ଲେଖା ହୋଇଥିଲା । ଏଫିଜେପଟ ଓଲଟାଇ ଦେଖି ସାରିବା ପରେ ପଚାରିଲେ—ତ୍ୟାଗୀର କ'ଣ କୌଣସି ଝିଅ ସହିତ ସମ୍ପର୍କ ଥିଲା, ଯାହାର ନାମର ପ୍ରଥମ ଅକ୍ଷର ଏ. ଏବଂ ଏମ. ଥିଲା ।

ସୁଶୀଲ ମନେ ମନେ ଭାବିଲା—ଅଚଳା ମଜୁମଦାର । ଏପରି କୌଣସି ଝିଅ ହୁଏତ ତ୍ୟାଗୀ ଅଫିସରେ କାମ କରୁଥିବେ ?

ନିର୍ମାଣୀ କହିଲେ—ତ୍ୟାଗୀର ଅଫିସରେ କୌଣସି ଝିଅ କାମ କରୁ ନ ଥିଲି ।

ତା' ହେଲେ ମିସ୍ ଏ. ଏମ୍. ନାମ୍ନୀ କେହି ତା ସହିତ ମିଳାମିଶା କରୁଥିଲେ କି ? ପ୍ରଭୁ ଦୟାଲ କହିଲେ । ବିଶ୍ୱାସ ହେଉଛି ଯେ ମିସ୍ ଏ. ଏମ୍. ହିଁ ତ୍ୟାଗୀର ହତ୍ୟାକାରିଣୀ ହୋଇପାରନ୍ତି ।

ସୁନିଲ ମନେ ମନେ ନିଜକୁ ଧିକ୍କାର କରୁଥାଏ । ସେ କାହିଁକି ଭଲ ଭାବରେ ରୁମ୍ ଖୋଜି ନ ଥିଲା, ଯଦ୍ଵାରା କି ମେକ୍ଅପ ବକ୍ସ ପଡ଼ି ରହିଥିଲି । ସେ ତ ଶଭଲନ୍ଧର ଖୋଜୁଥିଲି । ତେଣୁ ବୋଧହୁଏ ସେଇଟିକୁ ଭଲଭାବେ ଦେଖି ପାରି ନ ଥିଲି ।

ପ୍ରଭୁ ଦୟାଲ କହିଲେ—ଆପଣମାନେ ତ ତ୍ୟାଗୀକୁ ଭଲ ଭାବରେ ଜାଣିଥିବେ । ଯେହେତୁ ସେ ଆପଣମାନଙ୍କର ଷ୍ଟାଫରେ ରହିଥିଲି ।

ନିର୍ମାଣୀ ଉତ୍ତର ଦେଲି—ହଁ ।

ସେ 'ବ୍ଲାଷ୍ଟ'ର, ରିକଶ କାହିଁକି ଛାଡ଼ି ଦେଲେ ?

ସେ ନିଜର ସମ୍ବାଦପତ୍ର ବାହାର କରିବାକୁ ଚାହୁଁଥିଲେ ସେଥିପାଇଁ ରିକଶ ଛାଡ଼ି ଦେଲେ ।

'ହଲ୍ଚଲ୍' ?

'ହଁ' ।

ପେପରଟି କିପରି ବିକ୍ରି ହେଉଥିଲି ?

ଅଳ୍ପ କିଛି ବିକ୍ରି ହେଉଥିଲା ।

କ'ଣ ଅଳ୍ପ ପଇସାରରେ ଏତେ ମହଙ୍ଗା ଅଫିସର ଖର୍ଚ୍ଚ ଉଠି ଯାଉଥିଲି ?

ନିର୍ମାଣୀ ଚୁପ୍ ରହିଥିଲି ।

ତୁମେ କ'ଣ କହୁଛ ? – ପ୍ରଭୁ ଦୟାଲ ସୁନିଲକୁ ପଚାରିଲେ ।

ସୁନିଲ କହିଲି—ନାଁ । ଖର୍ଚ୍ଚ ଉଠି ପାରିବ ନାହିଁ ।

ତା' ଅର୍ଥ ତ୍ୟାଗୀର ଆୟର ଅନ୍ୟ କୌଣସି ପନ୍ଥା ଥିଲି ।

କେହି କିଛି କହିଲେ ନାହିଁ ।

ମୁଁ ଶୁଣିଛି ତ୍ୟାଗୀ 'ହଲଚଲ' ମାଧ୍ୟମରେ ବ୍ଲାକ୍‌ମେଲ୍ କରେ । କ'ଣ ଏହା ସତ ? ତୁମେ ତ ଖବର କାଗଜରେ କାମ କରୁଛ, ତୁମେ ଜାଣିଥିବ ?

ମୁଁ ସେହିପରି ଶୁଣିଥିଲି – ନିର୍ମାଣୀ କହିଲା ।

ମୁଁ ଦୁଇ ଚାରି ଥର ତା'ର ପତ୍ରିକା ପଢ଼ିଥିଲି । ସେ କେତେକ ଲୋକଙ୍କ ନାମରେ ବାଛି ବାଛି ଲେଖିଥିଲା । ସମୟେ ସମୟେ ଜଣାଯାଏ ଯେ, ଲୋକଙ୍କର ରହସ୍ୟ ଫିଟେଇବାର ଧମକ ଦିଆଯାଇଥାଏ । ତା'ପରେ ପୁଣି ତାହା ବନ୍ଦ ହୋଇଯାଏ । ମୋତେ ଜଣାଯାଏ ଯେ ସେ ବ୍ଲାକ୍‌ମେଲିଂ କରେ । ପ୍ରଥମେ ଲୋକଙ୍କୁ ପତ୍ର ମାଧ୍ୟମରେ ଧମକାଏ ଏବଂ ବ୍ଲାକ୍‌ମେଲିଂ ଅର୍ଥ ହାତକୁ ଆସିଲେ ଲେଖିବା ବନ୍ଦ ହୋଇଯାଏ । ତେଣୁ ମନେହୁଏ ତାଙ୍କ ବ୍ଲାକ୍‌ମେଲିଂରେ କେହି ଶିକାର ହୋଇ ତାଙ୍କୁ ହତ୍ୟା କରିଛି ।

ଚନ୍ଦ୍ର ଦୟାଳ ପୂର୍ଣ୍ଣ ଆତ୍ମବିଶ୍ୱାସ ସହ କହିଲେ ଯେ - ମୁଁ ଖୁବ୍ ଶୀଘ୍ର ଧରିନେବି ଯେ ତ୍ୟାଗୀର ବ୍ଲାକ୍‌ମେଲିଂ ଶିକାରରେ କିଏ ଏ. ଏମ୍ ଥିଲା । ସେ ନିଶ୍ଚୟ ହତ୍ୟାକାରୀ ବୋଲି ପ୍ରମାଣିତ ହେବ ।

ସୁଶୀଲ ଚକିତ ହୋଇଉଠିଲା ।

ନିର୍ମାଣୀ କହିଲା - ଶବର ଦୁଇଟି ଫଟୋ ଉଠାଇବାକୁ ଆମକୁ ଅନୁମତି ଦିଆଯାଉ ।

ଚନ୍ଦ୍ର ଦୟାଳ ହଁ ଭରିଲେ । ତା'ପରେ ସେ ଏ. ଏସ୍. ଆଇ. ଲୁଥରଙ୍କୁ କହିଲେ ଯେ – ପୋଲିସ ହେଡକ୍ୱାର୍ଟରକୁ ଫୋନ କରି କହି ଦିଅ ଯେ ପ୍ରେସ ରୁମ୍‌କୁ ଏହି ହତ୍ୟା ସଂବଧରେ ଜଣାଇ ଦେବେ । ନଚେତ ଅନ୍ୟ ଖବର କାଗଜ ରିପୋର୍ଟରମାନେ ହଇରାଣ କରିବେ ।

ଲୁଥର୍ 'ହଁ' ଭରି ଫୋନ୍ କରିଦେଲା ।

ସୁଶୀଲ ଫଟୋ ଉଠାଇଲା । ଫଟୋ ଉଠାଇବା କହାଁତ ଦରକାର ଥିଲା । କାରଣ ଯେଉଁ ଫଟୋ ସେ ଆଗରୁ ଉଠାଇଥିଲା,

ସମସ୍ତ ପଢ଼ିଲେ କହିବ ଯେ ଯେ ଗୁଳିକ ମଧ୍ୟ ଦୁଲ୍କିଦୟାଳଙ୍କ ଉପସ୍ଥିତିରେ ଉଠାଯାଇଛି । ଭଲହୋଇଲା ଯେ ଫିମାଣୀ ମୋତେ ସାଙ୍ଗରେ ଆଣିଥିଲା ।

ଦୁଲ୍କିଦୟାଳ ତ୍ୟାଗୀଙ୍କର ଗୋଟିଏ ଟେବୁଲ ତଳୁ ଭିତରୁ ଫରେନ୍ ଟାଇପ-ରାଇଟର ବାହାର କଲେ । ସେହି ଟାଇପ ରାଇଟର ମେସିନରେ ଗୋଟିଏ କାଗଜ ଲଗିଥିଲା, ଯେଉଁଥିରେ କ ଟେକ୍ସଟ ଧାଡ଼ି ଟାଇପ ହୋଇଥିଲା ।

ସେଥିରେ ଲେଖାଥିଲା –

ଆମେ ସଂପୃକ୍ତ ଅଧିକାରୀମାନଙ୍କୁ ଏହାର ସଙ୍କେତ ପ୍ରଥମେ ଦେଇଛୁ ଏବଂ ବର୍ତ୍ତମାନ ପୁଣି ଜଣାଇ ଦେଉଛୁ ଯେ ନ୍ୟାସନାଲ ବ୍ୟାଙ୍କର କ୍ୟାସିଅର ନାରାୟଣ କୁମାର, ଯେ କି ସମୁଦ୍ରର ବୁଡ଼ି ମରିଯାଇଛନ୍ତି ବୋଲି ଶୁଣାଯାଉଛି, ସେ ଏହି ସହରରେ ଜୀବିତ ଅବସ୍ଥାରେ ଅଛନ୍ତି । ବ୍ୟାଙ୍କର ବରିଷ୍ଠ ଅଧିକାରୀ ମଧ୍ୟ ଏହା ନୋଟ କରି ରଖନ୍ତୁ ।

ଦୁଲ୍କିଦୟାଳ କହିଲେ – ଏହା ମଧ୍ୟ ବ୍ଲାକମେଲିଂ ବୋଲି ମୋତେ ଜଣାପଡୁଛି । ମୁଁ ଆଶା କରୁଛି ଏହି ଫାଇଲିଂ କ୍ୟାବିନେଟ ଭିତରୁ କେତେ ଗୁଡ଼ିଏ ବ୍ଲାକ ମେଲିଂର ରିପୋର୍ଟ ମିଳି ପାରିବ ।

ସେଇ ସମୟରେ ସୁଜାଲ ଗୋଟିଏ ନୂଆ ଜିନିଷ ଦେଖିପାରିଲା ।

ପଛପଟ କାନ୍ଥରେ ଝରକା ପାଖରେ ଗୁଳି ଦ୍ୱାରା ହୋଇଥିବା ଦୁଇଟି ଗର୍ତ୍ତ ସ୍ପଷ୍ଟ ଦେଖାଯାଉଛି ।

ଏହି ଗର୍ତ୍ତ କାନ୍ଥର ଏତେ ଉପରେ ଥିଲା ଯେ ମନେ ହେଉଥିଲା ଯେପରି ଗୁଳି ତ୍ୟାଗୀଙ୍କର ମୁଣ୍ଡ ଉପର ଦେଇ ଚାଲିଯାଇଛି । ଦ୍ୱିତୀୟ ଗର୍ତ୍ତ କାନ୍ଥ ତଳରେ ଥିଲା ।

ଇନସପେକ୍ଟର କ୍ୟାବିନେଟର ତଳ ଖୋଲିବାକୁ ଚେଷ୍ଟା କରୁଥିଲେ ।

ସୋହନ ଲାଲ ଜୋଶୀଙ୍କ ଚେହେରା ଗମ୍ଭୀର ଥିଲା ଏବଂ ସେ ଏକ

ବଣାଲକାସ୍ଥ ଲୋକ ଥିଲେ । ଏହି ସମୟରେ ସେ ଆସି ପହଞ୍ଚିଲେ ।

ଇନସ୍‌ପେକ୍ଟର ପ୍ରଭୁ ଦୟାଲ ତାଙ୍କୁ ଜାଣିଥିଲେ ଏବଂ କଠୋର ସ୍ୱରରେ ପଚାରିଲେ କ'ଣ ଦରକାର ?

ଜୋଶୀ କହିଲେ— ତ୍ୟାଗୀ ସହ ଦେଖା କରିବାକୁ ଆସିଥିଲି । କିନ୍ତୁ ବର୍ତ୍ତମାନ......

ଇନସ୍‌ପେକ୍ଟର କହିଲେ — ଆଜି ଏଠାକୁ ପ୍ରଥମ ଥର ଆସିଛ ?
ହଁ । କାହିଁକି ?

ତୁମେ ରିଭଲଭର ରଖିଛ ? ଇନସ୍‌ପେକ୍ଟର କହିଲେ—

ରଖିଛି । ଜୋଶୀ କହିଲେ— ମୋ ପାଖରେ ରିଭଲଭର ରଖିବାର ଲାଇସେନ୍‌ସ ମଧ୍ୟ ରହିଛି ।

ତୁମେ ସବୁବେଳେ ରିଭଲଭର ନିଜ ପାଖରେ ରଖିଛ ?
କ'ଣ ହେଲା ? ରଖିବାକୁ କ'ଣ ମନା ?
ରିଭଲଭର ଦେଖାଅ ।

ଜୋଶୀ କୋଟ ବୋତାମ ଖୋଲି ରିଭଲଭର ବାହାର କରି ପ୍ରଭୁଦୟାଲଙ୍କ ହାତରେ ଦେଲେ ।

ପ୍ରଭୁଦୟାଲ ରିଭଲଭରକୁ ନିରୀକ୍ଷଣ କରି ଦେଖିଲେ ।

ସୁଶୀଲର ସେତିକବେଳେ ମନେ ପଡ଼ିଲା ଯେ ସେ ତାଙ୍କଯାର ଫଟୋ ଉଠାଇବାବେଳେ କେଦାର ନାଥ ଏବଂ ଜୋଶୀଙ୍କର ସ୍ତ୍ରୀ ସେହି କୋଠାରୁ ବାହାରୁଥିଲେ ଏବଂ ରାସ୍ତାର ଅନ୍ୟ ପଟ କୋଠାର ଦୁଆର ମୁହଁରେ ଠିଆହୋଇ ଜୋଶୀ ତାଙ୍କୁ ଦେଖୁଥିଲେ । ତେଣୁ ତ୍ୟାଗୀ ସମ୍ବନ୍ଧରେ ସୁଶୀଲର ଆଉ ଗୋଟିଏ କଥା ମନେ ପଡ଼ିଲା ।

ସୋହନ ଲାଲ୍ ଜୋଶୀ ସହରରେ ଗୋଟିଏ ବଡ଼ ଜୁଆଘର ଚଳାଉ ଥିଲେ । ତ୍ୟାଗୀ ସେହି ଜୁଆଘର ବିଷୟରେ ଜାଣିଥିଲେ ଏବଂ 'ହଲଚଲ'ରେ ଜୁଆଘରର ଅସ୍ତିତ୍ୱ ଓ ତାହାର ସଞ୍ଚାଳକ ସମ୍ବନ୍ଧରେ କେତେକ ତଥ୍ୟ ଛାପିଥିଲେ । ତାପରେ ଏହି ତଥ୍ୟରେ ପୋଲିସ ବିଭାଗ ଉପରେ ଦୋଷାରୋପ କରିଯାଇଥିଲା ଯେ

ଏତେ ପାଖରେ ଜୁଆଘର ଥାଇ ମଧ୍ୟ ତାଙ୍କର ଦୃଷ୍ଟିଗୋଚର ହେଉନାହିଁ । ନଷ୍ଟସ୍ୱ ପୋଲିସ ବିଭାଗ ଏହି ଜୁଆଘର କଥା ଜାଣି ନୀରବ ରହିଛନ୍ତି । ଫଳରେ ଥରେ ଜୁଆଘର ଉପରେ ପୋଲିସର କୋପ ପଡ଼ିଥିଲା । ଜୋଶୀ ଗିରଫ୍ ହୋଇଥିଲେ ଏବଂ ବହୁ କଷ୍ଟରେ ଜାମିନରେ ଆସିଲେ । ସହରର ସମସ୍ତେ ଜାଣିଥିଲେ ଯେ ଏହା କେବଳ ହରପ୍ରକାଶ ତ୍ୟାଗୀଙ୍କ ଦ୍ୱାରାହିଁ ହୋଇଥିଲା । ଜୋଶୀ ପରି ମାସ୍ତୂକ ଲୋକ ମାଡ ଖାଇ ଚୁପ୍ ରହିବା ଅସମ୍ଭବ ଜଣାପଡୁଥିଲା ।

ପ୍ରଭୁଦୟାଲ କହିଲେ— ତୁମେ କାହିଁକି ତ୍ୟାଗୀ ପାଖକୁ ଆସିଥିଲ ?

"ପ୍ରକୃତରେ ମୁଁ କେଦାର ନାଥଙ୍କ ସହ ଦେଖା କରିବାକୁ ଆସିଥିଲି, ଜୋଶୀ ଉତ୍ତର ଦେଲେ— କାରଣ ମୁଁ ଜାଣିବାକୁ ପାଇଲି ଯେ ମୋ ସ୍ତ୍ରୀ ଆଜିକାଲି କେଦାରନାଥଙ୍କ ସହିତ ଖୁବ୍ ମିଳାମିଶା କରୁଛି । ସେ ନିଜ ଅଫିସରେ ନଥିଲେ । ତେଣୁ...... ।"

କେଦାରନାଥଙ୍କର ଅଫିସ କ'ଣ ଏଠାରେ ? ତାଙ୍କର ଅଫିସ ତ ଧର୍ମପୁରରେ ଥିଲା ?

ସେ ପୁରୁଣା କଥା । ବର୍ତ୍ତମାନ କେଦାର ନାଥ ବଡଲୋକ ହୋଇଗଲାଣି ସେ ଏଠାରେ ଖୁବ୍ ମହଙ୍ଗା ଏବଂ ବଢ଼ିଆ ଅଫିସ ନେଇଛି ।

ଏଠାରେ କେଉଁଠି ?

ଏହି ଫ୍ଳୋରରେ । ଗଲି ପାଖ ଅଫିସ ତାର ।

"ଆଚ୍ଛା-ଦେଖିବା"

କେଦାର ନାଥ ସହିତ ମୋର ଦେଖା ନ ହେବାରୁ ମୁଁ ଚାହିଁଲି ତ୍ୟାଗୀଙ୍କ ସହ ଦେଖା କରିଯିବି ।

ତ୍ୟାଗୀ ସହ କାହିଁକି ଦେଖା କରିବାକୁ ଚାହୁଁଥିଲ ?

ଜୋଶୀ କହିଲେ—ତାର ହାଲଚାଲ କ'ଣ ପଚାରିବାକୁ ଚାହୁଁଥିଲି

ଓ ଜାଣିବାକୁ ଚାହୁଁଥିଲି ଯେ ତାଙ୍କ ସ୍ୱାସ୍ଥ୍ୟ କପରି ଅଛି ?

ତାଙ୍କର ହତ୍ୟା ବିଷୟ ତୁମେ ଜାଣ ନାହିଁ ?

ଜାଣିଥିଲେ କାହିଁକି ଏଠାକୁ ଆସିଥାଆନ୍ତି ? କିଛି ଜଣା ପଡ଼ିଲା, କିଏ ହତ୍ୟା କରିଛି ?

ବର୍ତ୍ତମାନ ଜଣା ପଡ଼ିନାହିଁ । କିନ୍ତୁ କୌଣସି ଝିଅ ହତ୍ୟା କରି— ଥିବ ବୋଲି ଜଣା ପଡୁଛି ।

ସୁନୀଲ କହିଲା— ଆଜ୍ଞା ଘଟଣାସ୍ଥଳରେ କେବଳ ଗୋଟିଏ ମେକଅପ୍ ବକ୍ସ ଦେଖି ଏପରି ସନ୍ଦେହ କରିବା ଉଚିତ୍ ନୁହେଁ । ଆପଣ କ'ଣ ଜାଣନ୍ତି ଯେ ବକ୍ସଟି କେତେବେଳ ଠାରୁ ଏଠାରେ ପଡ଼ିଛି । ଏହା କ'ଣ ଠିକ୍ ଯେ ହତ୍ୟା ସମୟରେ ହିଁ ଏଇଟା ପଡି ଯାଇଛି ।

ଚନ୍ଦ୍ରଦୟାଳ କହିଲେ- ଠିକ୍ ଅଛି । କିନ୍ତୁ ମେକଅପ୍ ବକ୍ସର ମାଲିକାଣୀକୁ ଖୋଜି ତାକୁ ନିଶ୍ଚୟ ପଚରା ଉଚରା କରିବା ମିସ୍ ଏ. ଏମ୍ ହତ୍ୟା କରିଥିବା ସମ୍ଭବ ଯୋଗ୍ୟ ।

ସୁନୀଲ ଚୁପ୍ ରହିଲା ।

ଚନ୍ଦ୍ରଦୟାଳ ତା ଆଡ଼କୁ ପିଠି ବୁଲାଇ ତାଙ୍କର ଲୋକମାନଙ୍କ ସହିତ କ'ଣ କଥାବାର୍ତ୍ତା ହେଲେ ।

ସୁନୀଲ ଚୁପ୍‌ଚାପ୍ ରୁମ୍‌ରୁ ବାହାରି ଆସିଲା । ଲିଫ୍ଟକୁ ଅପେକ୍ଷା ନକରି ସିଡ଼ି ବାଟେ ତଳକୁ ଓହ୍ଲାଇ ଆସିଲା ।

ପାଖରେ ଗୋଟିଏ ହୋଟେଲ ଥିଲା । ସେଠାରେ ନିଜର ପ୍ରେସ-କାର୍ଡ ଦେଖାଇ କହିଲା ମୁଁ ଟିକିଏ ଫୋନ କରି ପାରିବି କି ?

ଆଜ୍ଞା ଏଠାରେ ଡାଇରେକ୍ଟ ଲାଇନ୍ ନାହିଁ । ଫୋନ ମାଲିକ କହିଲେ - ସାମନାରେ ଅଛି । ଯାଆନ୍ତୁ ଟେଲିଫୋନ କରି ପାରିବେ ।

ଧନ୍ୟବାଦ କହି ସୁନୀଲ ଚାଲିଗଲା ।

ଗୋଟିଏ କୋଣରେ ଦୁଇଟି ଟେଲିଫୋନ ଥିଲା । ସୁନୀଲ ଗୋଟିଏ ଫୋନ ଉଠାଇବାକୁ ଯାଉଁ ସଙ୍ଗେ ଅପରେଟର ଧରିଲା ।

ପ୍ଲିଜ ଗିଭମି 569484 ସୁନୀଲ କହିଲା ।

କିଛି ସମୟପରେ ଅପରେଟର ଲାଇନ ଦେଲା । ଅନ୍ୟପଟେ ଅଚଳା ମଜୁମଦାରର ପାଟି ଶୁଭିଲା ।

ସୁନୀଲ କହିଲେ "ଅଚଳା"— ଶରୀରଭର ସେଠାରେ ନାହିଁ ।

ଅଚଳା ଭୟଭୀତ ସ୍ୱରରେ କହିଲା— କିନ୍ତୁ ମୁଁ ଶରୀରଭର ସେଠାରେ ପକାଇଥିଲି ।

ମୁଁ ସେଠାରେ ପାଇଲି ନାହିଁ ।

ତାହେଲେ କୁଆଡ଼େ ଗଲା ?

ଜଣାପଡୁଛି ତୁମେ ସେଠାରୁ ଯିବା ପରେ କେହି ସେଠାରେ ପହଞ୍ଚିଛି ଏବଂ ସେ ଶରୀରଭର ନେଇ ଯାଇଛି । ସୁନୀଲ କହିଲା – ଅଚଳା ! ତୁମର ମେକଅପ୍ ବକ୍ସ ହଜି ନାହିଁ ତ ?

ଦେଖିକରି କହୁଛି— ଅଚଳା କହିଲା ।

ସୁନୀଲ ରସିଭର କାନରେ ଦେଇ ଉତ୍ତର ଅପେକ୍ଷାରେ ରହିଥିଲା ।

କିଛି ସମୟ ପରେ ଅଚଳା କହିଲା – ହଁ ହଜିଛି । ତୁମେ କପରି ଜାଣିଲ ?

ସେଇଟା ତ୍ୟାଗୀର ଅଫିସରେ ଶବ ପାଖରୁ ମିଳିଛି । ସୁନୀଲ କହିଲା— ଚିନ୍ତା କରନାହିଁ । ତାହା ସେମିତ ପ୍ରମାଣ ହୋଇପାରିବନାହିଁ । ପୋଲିସ ସେ ବକ୍ସ କିଏ ବ୍ୟବହାର କରୁଛି ଜାଣିପାରିବ ନାହିଁ । ତୁମେ ବିଶ୍ୱାସ ରଖ କିଛି ହେବ ନାହିଁ । ତାପରେ ରସିଭର ରଖିଦେଲା । ସେ ଟେଲିଫୋନ କରସାରି ଆସିବାକୁ କବାଟ ଖୋଲିବା ସମୟରେ ପାଖ ଟେଲିଫୋନରେ ଗୋଟିଏ ଶବ୍ଦ ଶୁଣାଗଲା— 569484 ପ୍ଲିଜ ।

ସୁନୀଲ ଠିଆ ହୋଇଗଲା ଏବଂ କାନ ପାରି ଶୁଣିଲା ।

ଅଳ୍ପ ସମୟ ପରେ ଶୁଣାଗଲା— ଟିକଏ ମିଷ୍ଟର ଏ. କେ. ମଜୁମଦାରଙ୍କ ସହିତ କଥାବାର୍ତ୍ତା ଅଛି । ତାପରେ କିଛି ସମୟ ପରେ ଶୁଣାଗଲା ଯେ ପୋଲିସ ସେଠାରେ ପହଞ୍ଚି ଯାଇଛି ଏବଂ ସେମାନେ ସନ୍ଦେହ କରୁଛନ୍ତି ଯେ କୌଣସି ସ୍ତ୍ରୀ ହତ୍ୟା କରିଛି ଯାହାର ପ୍ରଥମ ଅକ୍ଷର ଏ. ଏମ୍ । ମୁଁ ଏତିକି ଜାଣିଛି ଯେ ସମ୍ଭବତଃ ପୋଲିସଙ୍କୁ ମଧ୍ୟ ଏହାଠାରୁ ଅଧିକ କିଛି ଜଣା ନାହିଁ । ଏହା କହିବା ପରେ ରିସିଭର ରଖିବାର ଶବ୍ଦ ଶୁଣାଗଲା ।

ସୁନୀଲ ସାବଧାନତା ସହ ବାହାରକୁ ଦେଖିଲା ।

ଅନ୍ୟ ପଟ ଟେଲିଫୋନ୍ ବୁଥ୍‌ରୁ ମୋହନଲାଲ ଯୋଶୀ ବାହାରକୁ ବାହାରିଲେ ।

ଅଳ୍ପ ସମୟ ପରେ ସୁନୀଲ ମଧ୍ୟ ବାହାରକୁ ଆସିଲେ । ସେ ଫୋନର ପଇସା ଦେଇ ଚୁଲି ଆସିଲେ ।

ସୁନୀଲ ଶ୍ରୀନିବାସ ହାଉସକୁ ଫେରିବା ବେଳକୁ ପ୍ରେସ ରିପୋର୍ଟର-ମାନେ ସେଠାରେ ପହଞ୍ଚି ସାରିଥିଲେ । ସେଠାରେ ଗୋଟିଏ ଆମ୍ବୁଲାନ୍ସ ଓ ପୋଲିସ ଜିପ ଠିଆ ହୋଇଥିଲା ।

ମୋହନ ସେହି ଭିଡ ଠାରୁ ଦୂରରେ ଠିଆ ହୋଇ ସିଗାରେଟ ଟାଣୁଥିଲେ ।

ସୁନୀଲ ତାଙ୍କ ପାଖରେ ପହଞ୍ଚିଲେ ।

ପଚାରିଲେ କ'ଣ ଦେଖିଲ ?

ମୋହନ କହିଲା ମୁଁ ଉପସ୍ଥିତ ଥିବା ସମୟ ଠାରୁ ଏହି ଗଳିରେ କେହି ପାଦ ରଖି ନାହାନ୍ତି ।

ଠିକ ଅଛି ତୁମର କାମ ଶେଷ ।

'O K.'

କୋ:ହବ ସୁମାଲ ଠାରୁ ବିଦାୟ ନେଇ ଗଲେ । ସୁମାଲ ଶ୍ରୀନିବାସ ହାଉସ ଭିତରକୁ ଗ ଲେ ।

**

ଅଚଳା ଖୁବ୍ ଧୀରେ ରିସିଭର ରଖି ନିଜ ରୁମକୁ ଆସିଲା ।

ସେ ଭାବୁଥିଲା ଯେ ମେକ୍‌ଅପ୍ ବକ୍‌ସ ଘଟଣାସ୍ଥଳରେ କିପରି ପଡ଼ିଲା ? ସେ ଯେତେବେଳେ ବ୍ୟାଗରୁ ରିଭଲଭର ବାହାର କରୁଥିଲା, ସେତେବେଳେ ବୋଧହୁଏ ପଡ଼ି ଯାଇଥିବ । ଏହା ଭାବି ସେ ଚଉକି ଉପରେ ଆସି ବସି ପଡ଼ିଲା ।

ଏହି ସମୟରେ ଟେଲିଫୋନ ଘଣ୍ଟି ପୁଣି ଥରେ ବାଜିଲା । ସେ ଉଠି ବାହାରକୁ ଯାଉଥିଲା, ଚାକର ଆସି କହିଲା ଯେ ତାଙ୍କ ପାପାଙ୍କର ଫୋନ ଅଛି ।

ତାପରେ ସେ ନିଜ ରୁମରେ ଆସି ବସି ପଡ଼ିଲା ।

ସମସ୍ତ ଘଟଣା ତାର ଆଖି ଆଗରେ ଗୋଟିଏ ପରେ ଗୋଟିଏ ନାଚିଗଲା ପରି ଦେଖାଗଲା । ସେ ସେଇ ଦୃଶ୍ୟ ଭୁଲି ପାରୁ ନଥିଲା । ସେ ଦୁଇଥର ଗୁଳି ଚଳାଇଛି । ତା ସାମନାରେ ତ୍ୟାଗୀ ତଳେ ପଡ଼ି ମରିଯାଇଛନ୍ତି । ସେ ସେଠାରେ ରିଭଲଭର ପକାଇ ଦୌଡ଼ି ପଳାଇ ଆସିଛି ।

ସେଇ ବକ୍‌ସ ତାକୁ ତାର ବାପା ଦେଇଥିଲେ ଏବଂ ସେଥିରେ ତାର ନାମ ମଧ୍ୟ ସେ ହିଁ ଲେଖାଇ ଥିଲେ ।

ତାପରେ ଡ୍ରେସିଂ ଟେବୁଲ ଉପରେ ଥିବା ପ୍ରକାଶର ଫଟୋ ଉପରେ ତାର ନଜର ପଡ଼ିଲା । ପ୍ରକାଶ ଜଣେ କୁଳୀନ ଓ ଖାନଦାନ ଘରର ଯୁବକ ଥିଲା । ତ୍ୟାଗୀ ସହିତ ଅଚଳାର ଯେଉଁ ସବୁ ଘଟଣା ହୋଇଥିଲା, ତାହା ଅଚଳା ପାଇଁ ଲଜ୍ୟାକର ଘଟଣା ହେଲେ ମଧ୍ୟ ସେ ପ୍ରକାଶକୁ କୌଣସି କଥା ଲୁଚାଇ ନଥିଲା । ସେ ପ୍ରକାଶକୁ କହିଲା ଯେ

ତ୍ୟାଗୀ ପାଖରେ ତାର କେତେକ ଚିଠି ଥିଲି ଏବଂ ସେ ଗୋଟିଏ ରୁମରେ ତା ସହିତ ରହିଥିଲି ମଧ୍ୟ । ସେ ଯାହା କିଛି କରିଥିଲା ତାର ଭୁଲ ବୁଝାମଣାରେ ଅସମର୍ଥତା ଏବଂ ଅପରିପକ୍ୱ ବୟସ ଯୋଗୁଁ ହୋଇଥିଲା । ପ୍ରକାଶ ଖାନଦାନୀ ଘରର ପିଲା ଥିଲା । ତେଣୁ ସେ ଅଚଳାର ଏହିସବୁ କଥା ଉପରେ ସେତେ ଗୁରୁତ୍ୱ ଦେଲା ନାହିଁ । ସେ ଅଚଳାକୁ ପଛ କଥା ସବୁ ଭୁଲି ଯିବାକୁ କହିଲା ।

ତଥାପି ତ୍ୟାଗୀର ଶେଷ ଧମକ ବିଷୟରେ ପ୍ରକାଶକୁ ଜଣାଇବା ବୋଧହୁଏ ତାର ଭୁଲ ଥିଲା । ସେହି କଥା ଶୁଣି ପ୍ରକାଶ ଯେତେବେଳେ ତା ପାଖରୁ ଗଲା ତା ଆଖି ରାଗରେ ଲାଲ ହୋଇଗଲା ।

ଦିନସାରା ଅଚଳା ମନରେ ଦୁଇଟି ଭୟ ତାକୁ ବ୍ୟତିବ୍ୟସ୍ତ କରୁଥାଏ – କାଳେ ପ୍ରକାଶ କ'ଣ କରିବ । କାଳେ ତ୍ୟାଗୀ ପ୍ରକାଶଙ୍କ ପରିବାର ମାଝରେ ପହଞ୍ଚିଯିବ ।

ସେହି ଭୟର ବଶୀଭୂତ ହୋଇ ସେ ତ୍ୟାଗୀର ଅଫିସକୁ ଯାଇଥିଲା ଏବଂ ସେଠାରେ ଏହି ଘଟଣା ଘଟିଥିଲା ।

ତ୍ୟାଗୀର ମୃତ୍ୟୁ ପାଇଁ ତାର କିଛି ଇଚ୍ଛା ନଥିଲା କେବଳ ଏଥିପାଇଁ ତାକୁ ଗୁଳି ମାରିବା ଉଚିତ୍ ଥିଲା ଯେ ସେ ଅଚଳାକୁ ଆଉ ଗୋଟିଏ ରାତି ତା ସହିତ ରହିବା ପାଇଁ କହିଥିଲା । ଯଦି ରାତି ଯାପନ ନକରେ ତେବେ ସେ ପ୍ରକାଶର ମାଆ ବାପାଙ୍କ ଆଗରେ କହିବ ଯେ ତାଙ୍କର ବୋହୂ ଚରିତ୍ରହୀନା ।

ତଥାପି ତାକୁ ମାରିଦେବାକୁ ଚାହୁଁ ନଥିଲା । ଅଚଳା କେବଳ ତାକୁ ଡରାଇବା ପାଇଁ ରିଭଲଭର ବାହାର କରିଥିଲା । କିନ୍ତୁ ରିଭଲଭରରୁ ଗୁଳି ବାହାରି ଗଲା ।

"ଅଚଳା" ! —ଏହି ସମୟରେ ତା ବାପାଙ୍କ ଡାକ ଶୁଭିଲା । ମଜୁମଦାର ଘର ଭିତରକୁ ଆସିଲେ । ତାଙ୍କର ଚେହେରା ଗମ୍ଭୀର

ଦେଖା ଯାଉଥିଲା । ଖୁବ୍ ଚିନ୍ତିତ ସ୍ୱରରେ ତାଙ୍କର ଏକମାତ୍ର ଝିଅ ଅଚଳାକୁ ଅନାଇ ଗୋଟିଏ ଚେୟାର ଉପରେ ବସିଲେ । କିଛି ସମୟ ଚୁପ୍ ଚାପ୍ ବସି ରହିଲେ । କିପରି କଥାଟା ଆରମ୍ଭ କରିବେ ଭାବି ପାରୁ ନ ଥିଲେ ।

"ଅଚଳା !" ଆଜି ଦୀର୍ଘଦିନର ପରେ ହରିପ୍ରକାଶ ତ୍ୟାଗୀଙ୍କ ହତ୍ୟା କରାଯାଇଛି ।

ଅଚଳା ଚମକି ପଡ଼ି କହିଲା— ହଁ ।

କ'ଣ ତୋର ସେ ଚିଠି ବର୍ତ୍ତମାନ ପର୍ଯ୍ୟନ୍ତ ତା ପାଖରେ ଅଛି ?

ଅଚଳା ପିଲା ଦିନରୁ ତା ମାଆକୁ ହରାଇ ଥିଲା । ତା ବାପା ହିଁ ତାର ମାଆ ଥିଲେ । ବାପା ଝିଅଙ୍କ ମଧ୍ୟରେ ଏତେ ମମତା ଥିଲା ଯେ କେହି କାହାକୁ ଲୁଚାଉ ନ ଥିଲେ । ତେଣୁ ତ୍ୟାଗୀ କଥା ଅଚଳା ମଧ୍ୟ ବାପାଙ୍କୁ କହିଦେଇଥିଲା । ତା ବାପା କହିଥିଲେ ଯେ ତ୍ୟାଗୀ ବ୍ଲାକମେଲିଂ ପାଇଁ ଯାହା ଟଙ୍କା ଦାବୀ କରୁଥିଲା ତାକୁ ଦେଇଦେବା ଉଚିତ୍ । ମଜୁମଦାର ବହୁତ ଧନୀ ଲୋକ ଥିଲେ । ତେଣୁ ତ୍ୟାଗୀର ଦାବୀ ତାଙ୍କ ଆଗରେ କିଛି ନ ଥିଲା ।

ଅଚଳା କହିଲା ଚିଠି ତା ପାଖରେ ଥିବ । ସେ ତ ମୋତେ ଫେରାଇ ନାହିଁ ।

"ଝିଅ"— "ମୁଁ ଶୁଣିଲି ଯେ ଆଜି ତ୍ୟାଗୀର ଅଫିସ ଘରପାଖରେ ତୁ ଥିଲୁ । ମୁଁ ଭାବିଲି ବୋଧହୁଏ ତୁ........"

ନାଁ, ନାଁ – ଅଚଳା ଭୟଭୀତ ହୋଇ କହିଲା । ତା ବାପାଙ୍କ ସହ ତାର ଘନିଷ୍ଠତା ଥିଲା ସତ, କିନ୍ତୁ ଏପରି ଭୟଙ୍କର କଥା ସ୍ୱୀକାର କରିବାକୁ ସେ ସାହସ କଲାନାହିଁ । ମୁଁ ସେପରି କିଛି କରିନାହିଁ ।

କ'ଣ କିଛି କରିନାହୁଁ ? ମଜୁମଦାର କହିଲେ ।

ମୁଁ କହୁଛି ଯେ ତ୍ୟାଗୀର ମୃତ୍ୟୁ ସହିତ ମୋର କୌଣସି ସମ୍ବନ୍ଧ ନାହିଁ ।

ମୁଁ କ'ଣ ସେ କଥା କହୁଛି ? ମୁଁ କହୁଛି ଯେ ଖାନତଲାସ ସମସ୍ତରେ ତୋର ଚିଠି ଯଦି ପୋଲିସ ହାତକୁ ଚାଲିଯାଏ ? ମୋର ପୋଲିସ କମିଶନରଙ୍କ ସହିତ ଭଲ ସମ୍ପର୍କ ଅଛି । ସେ ଚିଠି ମୁଁ ଫେରାଇ ଆଣି ପାରିବି । ଯଦି ପୋଲିସ ଚାହିଁବେ ତୋ ସହ କଥାବାର୍ତ୍ତା ହେବା ପାଇଁ, ତେଣୁ ମୁଁ କହୁଛି କିଛି ଦିନ ପାଇଁ ତୁ ସହରରୁ ବାହାରକୁ ଚାଲି ଯା ।

କିନ୍ତୁ••••.......

ମୋ କଥା ଶୁଣୁ । ମୁଁ କହୁଛି ତୁ ବିଶ୍ୱନଗର ତୋ ମାଉସୀ ପାଖକୁ ଚାଲି ଯା । ଯେଉଁ ଡ୍ରାଇଭର ତୋତେ ବିଶ୍ୱ ନଗରରେ ଛାଡ଼ିଦେଇ ଆସିବ ସେ ଏବଂ ତୋର ମାଉସୀଙ୍କୁ ପଚାରିଲେ ସେମାନେ କହିବେ ଯେ ତୁ ସେଦିନ ଦିପହରେ ବିଶ୍ୱନଗରରେ ଥିଲୁ । ମୁଁ ଭାବୁଛି ଏପରି କଲେ ଭଲ ହେବ. ତୁ କ'ଣ ଭାବୁଛୁ ।

ଅଚଳା ବାପାଙ୍କ ମୁହଁକୁ ଚାହିଁ ରହିଲା ।

ମୁଁ ଚାହୁଁ ନାହିଁ ଯେ ତ୍ୟାଗୀର ହତ୍ୟା ଘଟଣାରେ ତୋ ଉପରେ ମିଛ କଳଙ୍କ ଲାଗୁ କିମ୍ବା ତୋ ବିଷୟରେ ଭୁଲ ପ୍ରଚାର ହେଉ । ତେଣୁ ଏଇଟା ଭଲ ହେବ ବୋଲି ମୁଁ କହୁଛି, ତୋ ଇଚ୍ଛା ।

ଠିକ ଅଛି । ଅଚଳା ନମ୍ର ଭାବରେ କହିଲା—ଯଦି ଆପଣ ତା ଠିକ୍ ଭାବୁଛନ୍ତି ମୋର କିଛି ଆପତ୍ତି ନାହିଁ ।

"ଗୁଡ଼" । ମଜୁମଦାର କହିଲେ ଏବଂ ଉଠିପଡ଼ି କହିଲେ ତୁ ପ୍ରସ୍ତୁତ ହୋଇ ଯା । ଡ୍ରାଇଭର ଗାଡ଼ି ବାହାର କରୁଛି । ମୁଁ ତୋ ମାଉସୀ ପାଖକୁ ଫୋନ କରିଦେଉଛି ।

ମଜୁମଦାର ସେଠାରୁ ଚାଲିଗଲେ ।

ସେ ଚାଲିଯିବା ପରେ ଅଚଳା ଭାବରେ ଥିବାକୁ ଲାଗିଲା ।

କ'ଣ ତା' ବାପା ଜାଣିଥିଲେ ଯେ ତ୍ୟାଗୀର ହତ୍ୟା ସେ କରିଛି ? ତାଙ୍କ କଥାରୁ ତ ସେହିପରି ଜଣାପଡୁଛି । ସେଥିପାଇଁ ସେ ତା' ପାଇଁ ଏପରି

ବାଟ କରୁଛନ୍ତି ।

ଯଦି ଜାଣିଥିବେ ତେବେ କପଟ ? ହଠାତ୍ ହେଲା ପରେ ଏତେଶୀଘ୍ର କପଟ ସେ ଯାଣିଲେ ?

ତା'ର ମନେ ପଡ଼ିଲା ଯେ ଯେତେବେଳେ ସେ ଟ୍ୟାକ୍‌ସିରେ ଆସି ପହଂଚିଲା, ସେତେବେଳେ ତା' ବାପା ମଧ୍ୟ କାରରେ ଆସି ପହଞ୍ଚିଥିଲେ ।

କିନ୍ତୁ ସେ କପଟ ଯାଣିଲେ ଯେ ସେ କମର୍ସିଆଲ୍ ଷ୍ଟ୍ରିଟ୍‌କୁ ଯାଇଥିଲା।

ଏହାପରେ ଭାବି ଅତିଲା ଲୁଗା ବଦଳାଇଲା, କିଛି ଲୁଗାପଟା ସୁଟ-କେଶ୍‌ରେ ରଖିଲା ଏବଂ ରୁମ୍‌ରୁ ବାହାରି ଆସିଲା ।

ସେ ତା ବାପାଙ୍କ ରୁମ୍‌ରେ ପହଞ୍ଚିଲା । ବାପା ସେଠାରେ ନଥିଲେ । ସେ ଯାଇ ଟେବୁଲ ଡ୍ରୟର ଖୋଲିଲା । ଯାହା ଦେଖିଲା ଆଶ୍ଚର୍ଯ୍ୟ ହୋଇଗଲା ।

ଯେଉଁ ଡ୍ରୟରୁ ସେ ତା ବାପାଙ୍କ ରିଭଲଭର ବାହାର କରିଥିଲା, ଯେଉଁ ରିଭଲଭର ଦ୍ୱାରା ତ୍ୟାଗୀକୁ ଗୁଳି କଲା ପରେ ସେଠାରେ ପକାଇ ଦେଇ ଆସିଥିଲା ସେଇଟି ଡ୍ରୟରରେ ଯଥା ସ୍ଥାନରେ ଅଛି ।

**

ସୁଶୀଲ ନିର୍ମାଣୀ ସହିତ 'ବ୍ଲାଷ୍ଟ' ଅଫିସରୁ ଫେରିଲେ । ନିର୍ମାଣୀ ନିଜ ଅଫିସ ରୁମ୍‌କୁ ଗଲେ । ସୁଶୀଲ ନିଜ କ୍ୟାବିନକୁ ଗଲା ।

ସେ ଅର୍ଜୁନକୁ ଡାକିଲେ ।

ତୁମେ କ'ଣ କରୁଛ ? ସୁଶୀଲ ପଚାରିଲେ ।

କିଛି ନାହିଁ ସୁବୁଦ୍ଧି—ଅର୍ଜୁନ କହିଲା ।

ଦିନ ସାରା କୁଆଡେ ଯାଇଥିଲ । ଡାକ୍ତରଙ୍କ ଫଟୋ ଉଠାଇବାର ଥିଲା । ତୁମେ ନ ଥିବାରୁ ମୋତେ ଯିବାକୁ ପଡ଼ିଲା ।

ନିର୍ମାଣୀ ମୋତେ ଅନ୍ୟଆଡେ ପଠାଇଥିଲେ ।

ଠିକ୍ ଅଛି । ସୁଶୀଲ ନିଜ କ୍ୟାମେରା ତା ପାଖରେ ରଖିଦେଲା — ଏଥିରେ ଫିଲ୍ମ ଅଛି । ତାକୁ ବାହାର କରିଦିଅ । ଆଉ ଗୋଟିଏ ଫିଲ୍ମ

ଦଅ । ସେ ତାଜମହଲ ଶୋଭାଯାତ୍ରାର ଫଟୋର ନେଗେଟିଭ୍ ବାହାର କରି ଦେଲେ । କହିଲେ ଏହି ଫଟୋ ପ୍ରିଣ୍ଟ କରି ଆଣ ।

କିନ୍ତୁ ଡାର୍କରୁମ ତ ବର୍ତ୍ତମାନ ଖାଲି ନାହିଁ । ଅର୍ଜୁନ କହିଲା— ଠାକୁର କେତେକ ଜରୁରୀ ପ୍ରିଣ୍ଟ କରୁଛନ୍ତି ।

ଯେତେବେଳେ ଡାର୍କରୁମ୍ ଖାଲି ହେବ, ସେତେବେଳେ ଏ କାମ ତୁମେ କରିଦେବ ।

O. K.

ନଚେତ ତୁମେ ନେଗେଟିଭ୍ ଗୁଡ଼ିକ ଠାକୁରଙ୍କୁ ଦେଇ ଦିଅ । ଯେତେବେଳେ ତାଙ୍କୁ ସୁବିଧା ହେବ ପ୍ରିଣ୍ଟ କରିଦେବେ ।

ଠିକ୍ ଅଛି ।

କିନ୍ତୁ ତାଙ୍କୁ କହିବ ଦୁଇଟି ଯାକ ପ୍ରିଣ୍ଟ ଗୋଟିଏ ଲଫାଫାରେ ରଖିବେ ନାହିଁ । ମୋତେ ଅଲଗା ଅଲଗା କରି ଆଣି ଦେବେ ।

ଠିକ୍ ଅଛି ।

ଅର୍ଜୁନ କ୍ୟାମେରା ଓ ରିଲ ନେଇ ବାହାରକୁ ଚଲି ।

ସେତେବେଳେ ଜଣେ ଲୋକ କ୍ୟାବିନକୁ ଆସିଲା ।

ସୁନୀଲ ତାଙ୍କୁ ଦେଖି ପଚାରିଲେ କୁହନ୍ତୁ ।

ସେ କହିଲେ – ମୁଁ ଆପଣଙ୍କ ସହ ଗୋଟିଏ ଫଟୋ ବିଷୟରେ କଥାବାର୍ତ୍ତା କରିବାକୁ ଆସିଛି ।

କେଉଁ ଫଟୋ ?

ଯେଉଁ ଫଟୋ ଆପଣ ଆଜି କମର୍ସିଆଲ ଷ୍ଟ୍ରିଟ୍ରେ ତାଜମହଲ ଶୋଭା ଯାତ୍ରାବେଳେ ଉଠାଇଥିଲେ ।

ସୁନୀଲ ସେ ଲୋକକୁ ଭଲ ଭାବରେ ଦେଖିଲେ । ସେ ସେହି ଲୋକ ଥିଲା, ଯାହାକୁ କି ସେ କମର୍ସିଆଲ ଷ୍ଟ୍ରିଟରେ ଦେଖିଥିଲେ । ସୁନୀଲ ଲକ୍ଷ କରିଲେ ସେତେବେଳେ ସେ ଭାରି ବ୍ୟସ୍ତ ଜଣା ପଡୁଥିଲା ।

ଆପଣ ସେ ଫଟୋ ବିଷୟରେ କ'ଣ କହିବେ ? ସୁଶୀଳ ପଚାରିଲେ ।

ତାହା କ'ଣ ଆପଣଙ୍କ ସମ୍ବାଦପତ୍ରରେ ଛପା ହେବ ?

ଜାଣେ ନା । ମୋର କାମ ଫଟୋ ଉଠାଇବା । ବର୍ତ୍ତମାନ ତାହା ଛପା ଯିବ କି ନାହିଁ ତାହା'ର ମୀମାଂସା ନିଉଜ୍ ଏଡ଼ିଟର କରିବେ । ଆପଣ କାହିଁକି ପଚାରୁଛନ୍ତି ?

ଆଜ୍ଞା ପଚାରିବାର କାରଣ ହେଉଛି—ସେ ଗାର୍‌ ବିକଳ ହୋଇ କହିଲା – ଦୁର୍ଭାଗ୍ୟବଶତଃ ସେଥିରେ ମୋ ଫଟୋ ଉଠି ଯାଇଛି । ଯଦି ସେହି ଫଟୋ ସମ୍ବାଦପତ୍ରରେ ଛପାଯାଏ ତେବେ ମୋର ଭାରି ଅସୁବିଧା ହେବ । ଯଦି ସମ୍ବାଦପତ୍ରରେ ତାହା ଛପା ଯାଏ ତେବେ ମୋ ଫଟୋଟା ସେଥିରୁ କାଟି ହେବ ନାହିଁ ?

ସେ ଫଟୋ ଛପିଲେ ଆପଣଙ୍କର କି ଅସୁବିଧା ହେବ ?

ସେ ଚୁପ୍ ରହିଲା । କାରଣ ସେ କଥାଟା କ'ଣ କହିବାକୁ ଚାହୁଁ ନ ଥିଲା ।

ଆପଣ ବୁଝି ପାରିବେ ନାହିଁ । ସେ କହିଲା ।

ଦେଖ ମୁଁ ଜାଣେ ନାହିଁ ସେ ଫଟୋ ଛପାଯିବ କି ନାହିଁ । ଫଟୋ ମୁଁ ଠିକ୍ ଭାବେ ଉଠାଇଛି କି ନାହିଁ କହି ପାରିବି ନାହିଁ । କାରଣ ଫଟୋ ବର୍ତ୍ତମାନ ପର୍ଯ୍ୟନ୍ତ ପ୍ରିଣ୍ଟ ହୋଇନାହିଁ । ତୁମେ ସନ୍ଧ୍ୟାବେଳେ ଆସିବ । ମୁଁ ତୁମକୁ ଫଟୋ ବିଷୟରେ କହିବି ।

ଠିକ୍ ଅଛି । ଆପଣଙ୍କର ଦୟା । ମୁଁ ପୁଣି ଆସିବି ।

ସେ ଯିବା ପାଇଁ ଉଦ୍ୟତ ହେଲା ।

"ଶୁଣ ।"

ସେ ଅଟକି ଗଲା ।

"ତୁମେ ଏଠାକୁ କିପରି ଆସିଲ ? ତୁମେ ମୋତେ ଚିହ୍ନିଛ ?"

ନାଁ । ଆପଣ କମର୍ସିଆଲ ଷ୍ଟ୍ରିଟରେ ମୋର ସାଙ୍ଗ ଯେଉଁ ଫ୍ରେଞ୍ଚକଟ ଦାଢ଼ି ରଖିଥିବା ଲୋକ ସହିତ କଥାବାର୍ତ୍ତା ହେଉଥିଲେ, ଆପଣ ତାକୁ କହୁ-

ଥିବାର ମୁଁ ଶୁଣିଥିଲି ଯେ ଆପଣଙ୍କର ନାମ ସୁଶୀଲ ଏବଂ ଆପଣ 'ବ୍ଲାଷ୍ଟ'ର ପ୍ରତିନିଧି ।

ଓ......! ତୁମେ ନିଜର ନାମ କହିଲ ନାହିଁ ।

ପ୍ୟାରେଲାଲ । ଏତିକି କହି ସେ ସେଠାରୁ ଚାଲିଗଲା ।

ସୁଶୀଲ ସିଗାରେଟ ଖଣ୍ଡିଏ ଲଗାଇଲେ ଏବଂ ତା' ବିଷୟରେ ଚିନ୍ତା କରିବାକୁ ଲାଗିଲେ ।

ଅର୍ଜୁନ ଆସି କ୍ୟାବିନ ପାଖରେ ପହଞ୍ଚିଲା ।

ମୁଁ ଠାକୁରଙ୍କୁ ନେଗେଟିଭ୍ ଦେଇ ଦେଇଛି । ସେ କହିଲେ ଫଟୋ ପ୍ରିଣ୍ଟ ହୋଇଗଲେ ଆପଣଙ୍କ ନିକଟକୁ ପଠାଇ ଦେବେ । ମୁଁ ଯାଉଛି ।

କେଉଁଠିକୁ ?

ଶଙ୍କର ରୋଡ । ସେଠାରେ ନିଆଁ ଲାଗି ଯାଇଛି । କମିଶନୀ କହିଲେ ସେଠାରେ ଶୀଘ୍ର ପହଞ୍ଚିବାକୁ ହେବ ।

ଅଚ୍ଛା ହେଉ । ସେଠାରୁ ଫେରିଲେ ମୋତେ ଜଣାଇବ ।

ଆଚ୍ଛା ହେବ ।

ସେ ଚାଲିଗଲେ ।

ଅଳ୍ପ ସମୟ ପରେ ପୁଣି କ୍ୟାବିନର କବାଟ ଖୋଲିଲା ।

ସୁଶୀଲ ମୁଣ୍ଡ ଉଠାଇ ଦେଖିଲେ, ସାମନାରେ ଫ୍ରେଞ୍ଚକଟ ଦାଢ଼ି ରଖିଥିବା ଲୋକ ଠିଆ ହୋଇଥିଲା । ସେ କିଛି କହିବା ପୂର୍ବରୁ ସୁଶୀଲ କହିଲେ – ବର୍ତ୍ତମାନ ପର୍ଯ୍ୟନ୍ତ ଫଟୋ ଡେଭଲପ୍ ହୋଇନାହିଁ ।

ଓହୋ ! ସେ ନିରାଶ ସ୍ୱରରେ କହିଲା—କିନ୍ତୁ ଭାଇ ସାହେବ ସେ ପ୍ରିଣ୍ଟ ହେଲା ପରେ ତାକୁ ଛପିବା ପୂର୍ବରୁ ମୋତେ ଦେଖାଇବେ ତ ?

ଆପଣ ସେ ଫଟୋ ପାଇଁ କାହିଁକି ଏତେ ବ୍ୟସ୍ତ ହେଉଛନ୍ତି ?

ମୁଁ ଚାହୁଁନି ଯେ ମୋ ଫଟୋ ସେଥିରେ ଛପା ଯାଉ । କାରଣ ଆପଣ ତ ମୋପାଇଁ ଫଟୋ ଉଠାଇନଥିଲେ । ଆପଣ ତ ଡାକୁମାନଙ୍କ ଫଟୋ ଉଠାଇ ଥିଲେ । ଆପଣ ଯଦି ମୋର ଅନୁରୋଧରେ ଫଟୋଟା ସେଥିରୁ ବାଦ ଦେଇ ଦେବେ, ତେବେ ମୁଁ ଆପଣଙ୍କର ମଧ୍ୟ କିଛି ଉପକାର କରିବି ?

ମୋର କ'ଣ ଉପକାର କରିବ ?

ମୁଁ ଆପଣଙ୍କର ଉପକାରର ମୂଲ୍ୟ ଦେବାକୁ ଚାହେଁ ।

ଏଠାରେ ଉପକାର ବିକ୍ରି ହେଉନାହିଁ ।

ତାହାହେଲେ ଦୟାକରନ୍ତୁ । ଆଜ୍ଞା, ମୋର ସେ ଫଟୋ ଦରକାର ।

କାହିଁକି ? ଯଦି ସେ ଫଟୋ ଛପାଯାଏ କି ବିପଦ ଆସିବ ?

ମୋର ଧନ୍ଦା ନଷ୍ଟ ହୋଇଯିବ ।

କିପରି ?

ଆଜି ମୁଁ ଏହି ସହରରେ ରହିବାର ନଥିଲା । ଯଦି ମୁଁ ଆଜି ଏଠାରେ ଅଛି ବୋଲି ଜଣାପଡ଼ିଯାଏ ତେବେ ବହୁତ ବଡ଼ ବ୍ୟବସାୟ ଧରାଶାୟୀ ହୋଇଯିବ । ଆଜି ମୋର ବିଶ୍ୱନଗରରେ ରହିବା କଥା । ଯେଉଁମାନଙ୍କ ସହିତ ମୁଁ ବ୍ୟବସାୟ କରୁଛି, ରାଜନଗରରେ ମୁଁ ଥିବାର ଜାଣିଲେ ସେମାନେ ଭାବିବେ ଯେମୁଁ ତାଙ୍କୁ ଧୋକା ଦେବାକୁ ଚେଷ୍ଟାକରୁଛି ଏବଂ ତାଙ୍କର କୌଣସି ବିରୋଧି କମ୍ପାନୀ ସହିତ ଲୁଚ ଛପି କଥାବାର୍ତ୍ତା କରୁଛି । ଭାଇ-ମାହେବ ଆପଣଙ୍କର ତ କିଛି ଲାଭ ହେବ ନାହିଁ । ଆପଣଙ୍କର ତ ତାଜିଆ ଶୋଭାଯାତ୍ରାର ଫଟୋ ଦରକାର । ଆପଣ ସେ ଫଟୋରୁ ମତେ ବାଦ ଦେଇଦେଲେ ବହୁତ ବଡ଼ ବିପଦରୁ ମୁଁ ବଞ୍ଚିଯିବି ।

"ଫଟୋ ଧୋଆ ହୋଇଯାଉ—ସୁନୀଲ କହିଲେ—ଦେଖିବା କ'ଣ କରାଯାଇ ପାରେ ।

ତା'ହେଲେ ସନ୍ଧ୍ୟାବେଳେ ପୁଣି ଆସିବି ?

"ହଁ ।"

ମୋତେ ନ ଦେଖାଇ ଆପଣ ଫଟୋ ଛପିବା ପାଇଁ ପଠାଇବେ ନାହିଁ ତ ?

"ନାଁ ।"

"ଧନ୍ୟବାଦ ।" ସେ ଯିବାକୁ ବାହାରିଲା ।

ତୁମ ନାମ କ'ଣ ?

ସେ କିଛି ସମସ୍ତ ନୀରବ ରହି କହିଲା— ପ୍ୟାରେଲାଲ !

ସୁନୀଲ ତା' ମୁହଁକୁ ଚାହିଁ ରହିଲା ।

ଆଉ ତୁମର ପ୍ରକୃତ ନାମ କ'ଣ ?

ପ୍ୟାରେଲାଲ ! ମୋର ଗୋଟିଏ ନାମ ।

ସେ ଦୁଃଖପୂର୍ଣ୍ଣ ନୟନରେ ସୁନୀଲ ଆଡକୁ ଅନାଇ ମୁରୁକି ହସି ଦେଇ ସେଠାରୁ ଚାଲିଗଲା ।

ତାଜମହଲର ଫଟୋ ଦୁଇ ପ୍ୟାରେଲାଲଙ୍କ ପାଇଁ ମହତ୍ୱପୂର୍ଣ୍ଣ ଥିଲା । ସୁନୀଲ ବିଶ୍ୱାସ କଲେ ଯେ ଦୁଇ ଜଣଙ୍କର ନାମ ପ୍ୟାରେଲାଲ ।

ସୁନୀଲ ଠିକ୍ କରି ପାରୁ ନ ଥିଲେ ଯେ ତାଜମହଲର ସେହି ଫଟୋ ନିମାଣୀକୁ ଦେଖାଇବେ କି ନାହିଁ । ଯେଉଁ ଫଟୋରେ ଅଚଳା ବ୍ୟକ୍ତି ପାଖରେ ଠିଆ ହୋଇଥିବା ଫଟୋ ମଧ୍ୟ ଉଠି ଯାଇଥିଲା । ଅଚଳା ପାଇଁ କ'ଣ ସେ ମିଛ କହିବେ ଯେ ଫଟୋ ଠିକ୍ ଭାବେ ଉଠି ପାରିନାହିଁ ଏବଂ ତାହା ଛାପିବା ଉପଯୁକ୍ତ ନୁହେଁ ।

ଶେଷରେ ସେ ନିଷ୍ପତ୍ତି କଲେ ଯେ ଫଟୋ ପ୍ରିଣ୍ଟ ସରିବା ପର୍ଯ୍ୟନ୍ତ ସେ ଚୁପ ରହିବେ ।

ସେହି ଫଟୋ ଆସିବା ସଙ୍ଗେ ସଙ୍ଗେ ବିନା ଆମନ୍ତ୍ରଣରେ ସୁନୀଲ ସାମନାରେ ପଡ଼ିଥିବା ଚେୟାରରେ ଜଣେ ଭଦ୍ରଲୋକ ଆସି ବସିପଡ଼ି କହିଲେ— ହାଲୋ, ଖବର କ'ଣ ?

ଭଲ ! ସୁନୀଲ କହିଲେ —

ସୁନୀଲ କେଦାରନାଥଙ୍କୁ ଭଲ ଭାବରେ ଜାଣିଥିଲେ । ସେ ନାଆଁକୁ ଖାଲି ପ୍ରାଇଭେଟ ଡିଟେକ୍ଟିଭ ଥିଲେ, ମୂଳରେ ତାଙ୍କ ପେଟରେ ଅନେକ କିଛି ଲୁଚି ରହିଥିଲା । ନିଜ କ୍ଲାଏଣ୍ଟମାନଙ୍କୁ ବ୍ଲାକମେଲ କରିବା ତାଙ୍କର ଅଭ୍ୟାସ ଥିଲା । ଲୋକମାନେ କୌଣସି ସମସ୍ୟାର ସମାଧାନ ପାଇଁ ତାଙ୍କ ପାଖକୁ ଆସନ୍ତି, ଭାବନ୍ତି ଯେ ସେ ସମାଧାନ କରିଦେବେ । ସେ ପ୍ରଥମେ ସେମାନଙ୍କ ଠାରୁ ସମସ୍ତ ତଥ୍ୟ ସଂଗ୍ରହ କରନ୍ତି ଏବଂ ସେହି ତଥ୍ୟ ଅନୁସାରେ-

ନିଜେ ନିଜର କ୍ଲାଣ୍ଟକୁ ନିଜର ବ୍ଲାକମେଲିଂର ଶିକାର କରନ୍ତି । କୌଣସି ବିପଦରୁ ରକ୍ଷା ପାଇବାକୁ ଆସିଥିବା ଲୋକ ଆହୁରି ବିପଦର ଶିକାର ହୁଅନ୍ତି । ଅରେ ସୁନୀଲଙ୍କ ପାଖକୁ ସେ ସେହି ଆଶାରେ ଆସିଥିଲେ ଯେ ସୁନୀଲ ତାଙ୍କ ବ୍ୟବସାୟ କରାଇଦେବେ ଅର୍ଥାତ୍ ଯଦି କୌଣସି ଲୋକର ପ୍ରାଇଭେଟ ଡିଟେକ୍ଟିଭଙ୍କର ଦରକାର ପଡେ ତେବେ ସୁନୀଲ ତାଙ୍କୁ କେଦାରନାଥଙ୍କ ନାମ କହିବେ । ସୁନୀଲ ଦ୍ୱାରା କେଦାରନାଥ ଆଜି-ପର୍ଯ୍ୟନ୍ତ କୌଣସି ବ୍ୟବସାୟ ପାଇନାହାନ୍ତି, କାରଣ ସୁନୀଲ ସେ ଲୋକଙ୍କୁ ପସନ୍ଦ କରୁ ନ ଥିଲେ ।

ସୁନୀଲ ପଚାରିଲେ – କୁଆଡ଼େ ଆସିଲେ ? ଆପଣଙ୍କର ସେ ତାଜିଆ ଫଟୋ ଦରକାର ନାହିଁ ତ; ଯେଉଁ ଫଟୋ ମୁଁ କମର୍ସିଆଲ ଷ୍ଟ୍ରିଟରେ ଉଠାଇଥିଲି ?

କେଦାରନାଥ କହିଲେ— ହଁ ସେଇକଥା । ବର୍ତ୍ତମାନ ଆପଣଙ୍କୁ ଖାଗୀର ସମ୍ବାଦ ମିଳିଯାଇଛି । ଏପରି ଭଲ ସମ୍ବାଦ ପାଇଲେ 'ବ୍ଲାଷ୍ଟ'ରେ ଆଉ ତାଜିଆ ଫଟୋର ବୋଧହୁଏ ଦରକାର ହେବନାହିଁ । ତୁମେ ସେହି ନେଗେଟିଭ୍ ମୋତେ ଦେଇ ଦିଅ ।

ବର୍ତ୍ତମାନ ଦୁଇଜଣ ପ୍ୟାରେଲାଲ ଏଠାକୁ ଆସିଥିଲେ । ସେମାନେ ଫଟୋ ମାଗୁଥିଲେ କିମ୍ବା ସେହି ଫଟୋରୁ ସେମାନଙ୍କ ଫଟୋ ବାହାର କରି ଦିଆଯାଉ ବୋଲି ଅନୁରୋଧ କରୁଥିଲେ । କିନ୍ତୁ ତୃତୀୟ ପ୍ୟାରେଲାଲ କହୁଛନ୍ତି ତାଙ୍କର ନେଗେଟିଭ୍ ଦରକାର ।

ହଁ— ଠିକ୍ ବୁଝିଛ ତୁମେ । କିନ୍ତୁ ରିଲ୍‌ରୁ ନେଗେଟିଭ୍ କାଟିବାକୁ ତେଜରହିବ । ତାହେଲେ ମୋତେ ରିଲ୍‌ଟା ଦେଇ ଦିଅ ।

ତାପରେ ଯଦି ତୁମେ କହିବ ଯେ କ୍ୟାମେରାର ରିଲ ବାହାର କରିବାକୁ ଡେରିହେବ, ତେଣୁ କ୍ୟାମେରା ମଧ୍ୟ ତୁମକୁ ଦେଇ ଦେବ ।

ଅଛା କରନାହିଁ । ତାହା ଗୋଟିଏ ଗୁରୁତର କଥା ।

ଏ ଫଟୋ ତୁମର କ'ଣ ଦରକାର ?

କୌଣସି କାରଣ ଅଛି ।

ସେ କାରଣ ମୁଁ ଜାଣେ । ସେହି ଫଟୋ ଦ୍ୱାରା ପୋଲିସ ଜାଣି-ପାରିବେ ଯେ ଡ୍ୟାନୀ ହତ୍ୟା ସମୟରେ ତୁମେ ସେହି କୋଠାରେ ଥିଲ ।

ସେଥିପାଇଁ ମୋର ଭୟ ନାହିଁ । ମୋ ଉପରେ ହତ୍ୟାର ଦୋଷ ଦିଆଯାଇ ପାରିବ ନାହିଁ ; ନିଜକୁ ନିର୍ଦ୍ଦୋଷ ପ୍ରମାଣିତ କରିବା ପାଇଁ ମୋ ପାଖରେ ପ୍ରମାଣ ଅଛି ।

ତୁମର ପ୍ରମାଣ ମୁଁ ଜାଣେ । ତୁମେ ଦମୟନ୍ତୀ ଜୋଶୀଙ୍କ ସହ କୋଠାରୁ ବାହାରୁ ଥିବାର ମୁଁ ଦେଖିଛି । ଏଇକି ତୁମର ପ୍ରମାଣ ?

"ତାହାହିଁ ପ୍ରକୃତରେ ବିପଦ ।"—

କେଦାର ନାଥ କହିଲେ – ଯଦି ସୋହନଲାଲ ଜୋଶୀ ଜାଣି ପାରିବେ ଯେ ତାଙ୍କର ସ୍ତ୍ରୀ ମୋ ସହିତ ଥିଲେ, ତେବେ ଭାରି ଅସୁବିଧା ହେବ । ସେ ତା ସ୍ତ୍ରୀକୁ ମାରିଦେବ ।

ଆଉ ତୁମକୁ ?

ମୋ ସହିତ କିଛି କରିବାକୁ ସାହସ କରିବ ନାହିଁ । କିନ୍ତୁ ଦମୟନ୍ତୀର ଅବସ୍ଥା ଖରାପ ହେବ ।

ତୁମେ ସାବଧାନ ରହିବା ଉଚିତ୍ ଥିଲା ।

ଯାହା ହେବାର ହୋଇଗଲାଣି । ବର୍ତ୍ତମାନ ତୁମେ କୁହ ସେ ନେଗେଟିଭ୍ ମୋତେ ଦେବ କି ନାହିଁ ?

ସେ ନେଗେଟିଭ୍ ମୋର ନୁହେଁ, 'ବ୍ଲାଷ୍ଟ'ର ଜିନିଷ । ନିଜେ ଏଡ଼ିଟରଙ୍କ ପାଖରୁ ଯାଇ ମାଗିନିଅ ।

ମୁଁ ତୁମକୁ ମାଗୁଛି । ନେଗେଟିଭ୍ ତୁମ ପାଖରେ ଅଛି । ତୁମେ କାହିଁକି ମୋତେ ଅନ୍ୟ ପାଖକୁ ଯିବାକୁ କହୁଛ ?

ତୁମେ ଭୁଲ୍ କରୁଛ ଯେ ମୁଁ 'ବ୍ଲାଷ୍ଟ'ରେ ଚାକିରି କରୁଛି । ତୁମ ପାଖରେ ନୁହେଁ ।

କେଦାରନାଥ ଧମକ ଦେଇ କହିଲେ— ଠିକ୍ ଅଛି ମୋ କଥା ମାନିଯାଅ ନଚେତ୍ ଅନୁତାପ କରିବ ।

ତୁମେ କ'ଣ କରିବ ? ସୁଶୀଲ ରାଗିଯାଇ କହିଲେ ।

ମୁଁ ସବୁ ଜାଣେ ଯେ ତ୍ୟାଗୀ ହତ୍ୟା ଘଟଣାରେ ତୁମେ ସେଠାରେ କ'ଣ କରୁଥିଲ । ମୁଁ ପୋଲିସକୁ ତୁମ କାରବାର ବିଷୟରେ ସବୁ କହିଦେବି । ଦେଖିବ ଇନସ୍‌ପେକ୍ଟର ପ୍ରଭୁଦୟାଲ ତୁମର କ'ଣ କରନ୍ତି ।

କ'ଣ କହିବ ତୁମେ ପୋଲିସକୁ ?

ମୁଁ କ'ଣ କହିବି, ତୁମେ ସବୁ ବୁଝି ପାରୁଥିବ ।

ସୁଶୀଲ ଝାଳବୁହିବାକୁ ଲାଗିଲା । କେଦାରନାଥ ମିଛ କହୁଛି କମ୍ପା ପୋଲିସ ଆସିବା ପୂର୍ବରୁ ସେ ତ୍ୟାଗୀର ଅଫିସକୁ ଯାଇଥିଲା ବୋଲି ସେ ଜାଣିଛି । ଦ୍ୱିତୀୟ କଥା ଏହା ଯେ ଫଟୋ କଥା ଜଣା ପଡ଼ିଲେ ପ୍ରଭୁଦୟାଲ ସୁଶୀଲ ଉପରେ ଦୋଷ ଦେଇ କହିପାରନ୍ତି ଯେ ଘଟଣାସ୍ଥଳରେ କେଦାରନାଥ, ଦମୟନ୍ତୀ ଜୋଶୀ, ମୋହନଲାଲ ଜୋଶୀ, ଅଚଳା ମଜୁମଦାର ଇତ୍ୟାଦିଙ୍କର ଉପସ୍ଥିତି ବିଷୟରେ ତାଙ୍କୁ ସେ ପୋଲିସକୁ ସାଙ୍ଗେ ସାଙ୍ଗେ ଜଣାଇ ନଥିଲେ ।

ଏକଥା ସ୍ପଷ୍ଟ ଯେ କେଦାରନାଥ କୌଣସି ଗୁରୁତର କଥା ଜାଣିଥିଲେ । ନଚେତ୍ ସେ 'ବ୍ଲାଷ୍ଟ' ଅଫିସକୁ ଆସି ସୁଶୀଲଙ୍କୁ ଧମକାଇବାକୁ ସାହସ କରି ନ ଥାନ୍ତେ ।

କ'ଣ ଠିକ୍ କଲ ? - କେଦାରନାଥ କହିଲେ— ନେଗେଟିଭ୍ ଦେବ କି ନାହିଁ ।

ନା ।

ଠିକ୍ ଅଛି । ଦେଖିବ ମୁଁ ତୁମର କ'ଣ କରିବି ।

ଏହା କହି ସେ ବାହାରିକୁ ଚାଲିଗଲେ । ଗଲାବେଳେ କ୍ୟାବିନ କବାଟକୁ ଏତେ ଜୋରରେ ବନ୍ଦ କଲେ ଯେ ଯେପରିକି କବାଟ ଭାଙ୍ଗିଗଲା ।

ସେହି ସମୟରେ ଟେଲିଫୋନ ଘଣ୍ଟି ବାଜିଲା ।

ସୁନୀଲ ରିସିଭର ଉଠାଇଲେ ।

ହ୍ୟାଲୋ ସେ କହିଲେ ।

କିଏ କହୁଛନ୍ତି ? ଅନ୍ୟପଟରୁ ଇନସ୍‌ପେକ୍ଟର ପ୍ରଭୁଦୟାଳଙ୍କର ସ୍ୱର ଶୁଣାଗଲା ।

ମୁଁ ସୁନୀଲ କହୁଛି ।

ସୁନୀଲ ! ଦଶ ମିନିଟ ଭିତରେ ପୋଲିସ ହେଡକ୍ୱାଟରରେ ମୋ ରୁମ୍‌କୁ ଆସ ।

କ ଣ ହୋଇଛି ? ମୁ କ ଣ କରିଛି ?

ପାଟି ବନ୍ଦ କର । ତୁମେ ଆସୁଛନା ମୁଁ ପୋଲିସ ପଠାଇବି ?

କିନ୍ତୁ କଥା କ'ଣ ?

ତୁମେ ସବୁ ଜାଣ । ଯାହା କିଛି ନ ଜାଣିଛ ଏଠାକୁ ଆସିଲେ ଜାଣି ପାରିବ ।

କିନ୍ତୁ.......... ।

ଯଦି ତୁମକୁ ଏଠାକୁ ଆଣିବାକୁ ପୋଲିସ ପଠାଇବାକୁ ପଡ଼ିବ, ତେବେ ହାତକଡ଼ି ପିନ୍ଧି ବଡ଼ ରାସ୍ତା ଉପରେ ଏଠାକୁ ଆସିବ ।

ମୁ ଯାଉଛି ଆଜ୍ଞା । କିନ୍ତୁ ଦଶମିନିଟରେ ମୁଁ ସେଠାରେ ପହଞ୍ଚି ପାରିବି ନାହିଁ । ମୋ ପାଖରେ ତ ମୋଟର ସାଇକେଲ ନାହିଁ ।

ଟ୍ୟାକ୍‌ସିରେ ଆସ କି ଉଡ଼ାଜାହାଜରେ ଆସ ଏଠାରେ ଶୀଘ୍ର ଆସି ପହଞ୍ଚ ।

ଠିକ୍ ଅଛି ।

ଦଶମିନିଟ ମଧ୍ୟରେ । ମୋ ଅଫିସରେ ।

ତାପରେ ଫୋନ ରଖି ଦେଲେ ।

ସୁନୀଲ ମଧ୍ୟ ରିସିଭର ରଖିଦେଲେ । ସେ ହ୍ୟାଙ୍ଗରରେ ଝୁଲୁଥିବା ନିଜ କୋଟ ଆଣି ପିନ୍ଧି ନିଜ କ୍ୟାବିନରୁ ବାହାରକୁ ଆସିଲେ ।

ସେହି ଗଳା ମୂଣ୍ଡରେ ଡା଼ର୍କରୁମ ଥିଲା ।

"ସେ ସେଠାରେ ପହଞ୍ଚିଲେ । ଡାକଲେ—ଠାକୁର ।"

"ଆଜ୍ଞା ।"—ଭିତରୁ ଠାକୁର କହିଲେ ।

ମିନିଟକ ପାଇଁ ବାହାରକୁ ଆସ ।

ଠାକୁର ସାଙ୍ଗେ ସାଙ୍ଗେ ବାହାରକୁ ଆସିଲେ । ଭିତରେ ଲାଲବତୀ ଜଳୁଥିଲା । ସେ ସାବଧାନତା ସହ କବାଟ ବନ୍ଦ କରିଦେଲେ ।

ମୋ ଫଟର ପାଳି ପଡ଼ିଲାଣି କି ନାହିଁ ? ସୁଶୀଲ କହିଲେ ।

ଠାକୁର କହିଲେ,—ମୁଁ ବର୍ତ୍ତମାନ ଖୁବ୍ ଜରୁରୀ ଫଟୋ ତିଆରି କରୁଛି । ତା'ପରେ ଆପଣଙ୍କର କାମ କରିଦେବି ।

ଠିକ୍ ଅଛି । ମୁଁ ପୋଲିସ ହେଡକ୍ୱାଟରକୁ ଯାଉଛି । ନ ହେଲେ ମୁଁ ନିଜେ କରିଦେଇ ଥାଆନ୍ତି । ରିଲ୍‌ରେ ମୁଁ ଚିହ୍ନ ଦେଇଛି ସେ ଫଟୋ କମ୍ପା ନେଗେଟିଭ୍ କାହାରିକୁ ଦେଖାଇବ ନାହିଁ । ପ୍ରଥମେ ଫଟୋଗୁଡ଼ିକ ତିଆରି କରିବାକୁ ଚେଷ୍ଟା କରିବ ।

"ହେଉ ।"

ଯାହା ବି ତୁମେ ଦେଖିବ କାହାକୁ କିଛି କହିବ ନାହିଁ ।

O. K.

ମୁଁ ଘଣ୍ଟାଏ କମ୍ପା ଦେଢଘଣ୍ଟା ଭିତରେ ଫେରିଆସିବି । କିନ୍ତୁ ମୋ ଆସିବା ପୂର୍ବରୁ ପ୍ରିଣ୍ଟ କରି ଦେଇଥିବ ଏବଂ ନେଗେଟିଭ୍ ଯତ୍ନରେ ରଖିଥିବ ।

"ଠିକ୍ ଅଛି ।"

ସୁଶୀଲ ସେଠାରୁ ଚାଲିଗଲେ ।

ସେ ଘଣ୍ଟା ଉପରେ ଦୃଷ୍ଟିପାତ କଲେ । ଛ'ଟା ବାଜି ସାରିଥିଲା ।

***

ସନ୍ଧ୍ୟା ହେବାରୁ ଥଣ୍ଡା ପଡ଼ି ଯାଇଥିଲା । ସୁଶୀଲ ଭାବିଲା ଘରକୁ ଯାଇ ଗରମପୋଷାକ ପିନ୍ଧି ତା'ପରେ ପୋଲିସ ହେଡକ୍ୱାଟରକୁ ଯିବ ।

ବ୍ୟାଙ୍କ ଷ୍ଟ୍ରିଟ ପୋଲିସ ହେଡ଼କ୍ୱାଟରକୁ ଯିବା ବାଟରେ ପଡ଼ିବ । ତେଣୁ ସୁନୀଲ ନିଜ ଫ୍ଲାଟ ବାଟ ହୋଇଯିବା ପାଇଁ ଠିକ୍ କଲେ ।

ସେ ସ୍କୁଟରବାଲାଙ୍କୁ ବ୍ୟାଙ୍କ ଷ୍ଟ୍ରିଟ ଆଡ଼କୁ ଯିବାକୁ କହିଲେ ।

ସ୍କୁଟର ପଛେ ପଛେ ଗୋଟିଏ ଟ୍ୟାକ୍ସି ମଧ୍ୟ ବ୍ୟାଙ୍କ ଷ୍ଟ୍ରିଟ୍‌ରେ ପହଞ୍ଚିଲା । ସେହି ଟ୍ୟାକ୍ସି 'କ୍ଲାଷ୍ଟ' ଅଫିସ ପାଖରୁ ସୁନୀଲ ପଛରେ ଆସୁଥିଲା, କିନ୍ତୁ ସୁନୀଲ ଜାଣି ନଥିଲା ।

ସୁନୀଲ ସ୍କୁଟରକୁ ୩ ନମ୍ବର ଘର ସାମନାରେ ଠିଆ କରାଇଲେ । ସ୍କୁଟରବାଲାକୁ ଅପେକ୍ଷା କରିବାକୁ କହି ସେ ଘରକୁ ଗଲେ ।

ଟ୍ୟାକ୍ସି ସ୍କୁଟରଠାରୁ ଟିକିଏ ଆଗକୁ ଯାଇ ଅଟକିଲା । ସେଥିରେ ବସିଥିବା ଲୋକ ଓହ୍ଲାଇ ସୁନୀଲ ପଛେ ପଛେ ତାଙ୍କ ଘରକୁ ଗଲେ ।

ସୁନୀଲ ନିଜର ଗରମ ପୋଷାକ ପିନ୍ଧିଲେ ।

ସେହି ସମୟରେ ଘରର କବାଟ ଧୀରଭାବେ ଖୋଲି କେହି ଜଣେ ଭିତରକୁ ଆସିଲେ ଏବଂ ଗୋଡ଼ରେ ଠେଲି କବାଟ ବନ୍ଦ କରିଦେଲେ ।

ସୁନୀଲ କବାଟ ବନ୍ଦ ହେବାର ଶବ୍ଦ ଶୁଣି ଡ୍ରଇଂରୁମ୍‌କୁ ଆସିଲେ । ସେ ସେଠାରୁ ଫେରିଯିବାକୁ ଚାହୁଁଥିଲେ ତେଣୁ କବାଟ ବନ୍ଦ କରି ନ ଥିଲେ ।

ବେଡରୁମ୍‌ର କବାଟ ପାଖରେ ସେ ସ୍ତମ୍ଭୀଭୂତ ହୋଇ ଠିଆ ହୋଇଗଲେ ।

ତାଙ୍କ ସାମନାରେ ଫ୍ରେଞ୍ଚକଟ ଦାଢ଼ି ରଖିଥିବା ପ୍ୟାଟେଲ ନମ୍ବର ୨ ଥିଲା । ତା ହାତରେ ଗୋଟିଏ ରିଭଲଭର ଥିଲା ।

ଓ......ମାଇଁଗଡ । ସୁନୀଲ କହିଲେ—ତୁମେ ତ ବଡ଼ ମାରାତ୍ମକ ଲୋକ । ଏଠାରେ ମଧ୍ୟ ଆସି ପହଞ୍ଚିଲଣି ।

ସେ ଚୁପ୍ ରହିଲା । ପ୍ରବ୍‌ପରି ସୁନୀଲ ଆଡ଼କୁ ରିଭଲଭର ଦେଖାଇଲା ।

କ'ଣ ସେଇ ଫଟୋ ପାଇଁ ଆସିଛ ?

ସେ ମୁଣ୍ଡ ହଲାଇ ସମ୍ମତି ଜଣାଇଲା ।

ତୁମକୁ ଏଠିକାର ଠିକଣା କିପରି ଜଣାଗଲା ?

ବ୍ଲାଷ୍ଟରୁ ତୁମ ପଛେ ପଛେ ଆସି ଏଠାରେ ପହଞ୍ଚିଲି ।

ତା'ହେଲେ ଏଠାକୁ ଆସି ଲାଭ କ'ଣ ? ଫଟୋ 'ବ୍ଲାଷ୍ଟ' ଅଫିସରେ ଅଛି ବୋଲି ତ ତୁମେ ଜାଣିଛ ।

ଜାଣେ ।

ତା'ହେଲେ ଏଠାରେ ମୋତେ ଭଭିଭର ଦେଖାଇବା କ'ଣ ଦରକାର ?

ସେ ଭଭିଭର ଦେଖାଇ ନ ଧମକାଇ ବିନମ୍ର ଭାବରେ ସୁନୀଲକୁ କହିଲା—ଦେଖ ଯେମିତି ହେଉ ସେ ଫଟୋ ମୁଁ ନେବାକୁ ଚାହୁଁଛି । ସେହି ଫଟୋ ଏବଂ ନେଗେଟିଭ୍ ପାଇଁ ମୁଁ ତୁମକୁ ୧ ହଜାର ଟଙ୍କା ଦେବାକୁ ପ୍ରସ୍ତୁତ ଅଛି ।

କିନ୍ତୁ ପ୍ୟାଲେଲାଲ, ସେଇଟା କ'ଣ ମୋର । ସେଇଟାତ 'ବ୍ଲାଷ୍ଟ'ର ଜିନିଷ । ଯଦି ତୁମେ ସେମିତି କିଛି ଦେବାକୁ ଚାହୁଁଛ, ତା'ହେଲେ ଯାଇ 'ବ୍ଲାଷ୍ଟ'ରେ ଆମ ମାଲିକଙ୍କୁ ଦେଇଦିଅ ।

ମୁଁ ତୁମ ମାଲିକଙ୍କୁ ଜାଣେ ନାହିଁ, ମୁଁ ତୁମକୁ ଜାଣେ । ସେ ଫଟୋ ମୁଁ ତୁମଠାରୁ ନେବାକୁ ଚାହୁଁଛି ।

ବର୍ତ୍ତମାନ ସେଇଟା କିଛି ସାଧାରଣ ଫଟୋ ନୁହେଁ । ବର୍ତ୍ତମାନ ସେଇ ଫଟୋ ଗୋଟିଏ ହତ୍ୟାର ସାକ୍ଷୀ ହୋଇଯାଇଛି । ଯେତେବେଳେ ମୁଁ ସେହି ଫଟୋ ଉଠାଇଥିଲି, ସେତେବେଳେ କମର୍ସିଆଲ ଷ୍ଟ୍ରିଟ୍‌ରେ ଗୋଟିଏ ହତ୍ୟା ହୋଇଥିଲା । ହୁଏତ ପୋଲିସ ତୁମକୁ କିଛି ପଚାରିପାରନ୍ତି । ହୁଏତ ସେମାନେ ଜାଣିବାକୁ ଚାହିଁବେ ଯେ ସେତେବେଳେ ତୁମେ ସେଠାରେ କଣ କରୁଥିଲ ଏବଂ ବର୍ତ୍ତମାନ ସେଇଁ ୧ ହଜାର ଟଙ୍କା ମୋତେ ଦେବାକୁ କହୁଛ

ସେଥିରୁ ସେମାନଙ୍କର ବିଶ୍ୱାସ ହେବ ଯେ ସେହି ଅପରାଧରେ ତୁମେ ସମ୍ପୃକ୍ତ ଅଛି ବୋଲି । ମିଷ୍ଟର ପ୍ୟାରେଲାଲ ! ପୋଲିସ ତୁମକୁ ଦେଖିଲେ ଖୁବ୍ ଖୁସି ହେବେ । ମୁଁ ବର୍ତ୍ତମାନ ପୋଲିସ ପାଖକୁ ଟେଲିଫୋନ କରୁଛି ।

ସେ ବେଡ୍‌ରୁମ୍‌କୁ ଗଲେ ଯେଉଁଠାରେ କି ଟେଲିଫୋନ ଥିଲା ।

ପ୍ୟାରେଲାଲ ସତର୍କପୂର୍ଣ୍ଣ ସ୍ୱରରେ କହିଲା—ଖବରଦାର୍ ।

ସୁଶୀଲ ଚମକି ପଡ଼ିଲେ ।

ଦେଖ ଫୋନ୍ କର ନାହିଁ ।

ପୂର୍ବ ପରି ବିନୀତ ଭାବରେ ପ୍ୟାରେଲାଲ କହିଲା — ମୋତେ ତୁମେ ସାହାଯ୍ୟ କର । ଆମ ଦୁହିଁଙ୍କର ମଙ୍ଗଳ ହେବ ।

କ'ଣ କରିବି ?

ତୁମ ଅଫିସକୁ ଫୋନ୍ କରି ସେହି ଫଟୋଗୁଡ଼ିକ ଏଠାକୁ ମଗାଇ ନିଅ ।

ଯଦି ମୁଁ ସେପରି ନ କରିବି ?

ମୁଁ ତା'ହେଲେ ତୁମକୁ ଗୁଳି ମାରିଦେବି ।

ତା'ଦ୍ୱାରା କ'ଣ ତୁମେ ଫଟୋ ପାଇଯିବ ?

କିନ୍ତୁ ମୋର ପୂରା ବିଶ୍ୱାସ ଯେ ଏହି ସାଧାରଣ କଥା ପାଇଁ ତୁମେ ଜୀବନ ଦେବାକୁ ରାଜି ହେବନାହିଁ ।

ସୁଶୀଲ କିଛି ସମୟ ଚିନ୍ତା କରି କହିଲେ – ସେ ହଜାର ଟଙ୍କା କଥା ସତ ?

ଠିକ୍ ଅଛି ମୁଁ ଫୋନ କରୁଛି । ଥଣ୍ଡା ଲାଗୁଛି ଟିକିଏ କୋଟ୍‌ଟା ପିନ୍ଧି ପକାଏ ।

ସୁଶୀଲ ଆଗକୁ ଯାଇ ସୋଫା ଉପରୁ କୋଟ ଆଣିଲେ । କିନ୍ତୁ କପିଛି ପ୍ୟାରେ ଲାଲ ନମ୍ବର ଦୁଇ ଉପରକୁ ପକାଇଲେ । କୋଟ ତା ମୁହଁ ଉପରେ ଗୁଡ଼ାଇ ହୋଇଗଲା । ସେ ଡରିଗଲା । ସେ ଯେଉଁ ହାତରେ

ଭଉଲଭର ଧରଥିଲା ସୁନୀଲ ଜୋରରେ ଛଡାଇ ନେବା ବେଳକୁ ରଭଲଭର ଛୁଟିକି ଯାଇ ସୋଫାତଳେ ପଡ଼ିଲା ।

ତାପରେ ସେ ଲୋକ ନିଜ ଉପରୁ କୋଟକୁ ଫୋପାଡ଼ି ଦେଲା ।

ସୁନୀଲ ତା ଉପରକୁ ଡେଇଁ ପଡ଼ିଲା ।

ସେ ଟିକଏ ପଛକୁ ଘୁଞ୍ଚିଗଲା । ସେ ସୁନୀଲକୁ ଗୋଇଠା ମାରିଲା । ସୁନୀଲର ଗ୍ରୁଢ଼ଁର ବାଜିଲା । ସେ ଲୋକ ସେଠାରୁ ଦୁଆର ମୁଁହଁ ଆଡ଼କୁ ପଳାଇଲା ।

ସୁନୀଲ ଯାଇ କବାଟ ଖୋଲିବାକୁ ଚେଷ୍ଟା କରିବାରୁ ଜାଣି-ପାରିଲେ ଯେ କବାଟ ବାହାର ପଟୁ ବନ୍ଦ ଅଛି ।

ସୁନୀଲ ଝରକା ପାଖକୁ ଆସିଲେ । ସେହି ସମୟରେ ସେହି ଟ୍ୟାକ୍ସିଟି ସେଠାରୁ ଯାଉଥିବାର ସେ ଦେଖିଲେ । ପଛ ପଟରେ ବସିଥିବା ପ୍ୟାରେଲାଲ୍ ନଂ. ୨ ତାଙ୍କୁ ଅଳ୍ପ ଟିକିଏ ଦେଖାଗଲା ।

ସୁନୀଲ ଖୁବ୍ ଜୋରରେ ପାଟିକରି ଅପେକ୍ଷା କରିଥିବା ସ୍କୁଟର-ବାଲାଙ୍କୁ ଡାକିଲେ ଏବଂ ତାଙ୍କୁ ଉପରକୁ ଆସିବାକୁ କହିଲେ ।

ସେ ଝରକା ପାଖରୁ ଆସି ପ୍ୟାରେଲାଲ ହାତରୁ ଛସି ପଡ଼ିଥିବା ରଭଲଭରକୁ ସାବଧାନତାର ସହିତ ରୁମାଲରେ ଗୁଡ଼ାଇ ପ୍ୟାଣ୍ଟର ପଛ ପକେଟରେ ରଖିଲେ ।

ତାପରେ ସ୍କୁଟର ବାଲା ଆସି କବାଟ ଖୋଲିଲା ।

ସୁନୀଲ ତା ସହିତ ବାହାରକୁ ଆସିଲେ ।

***

ପୋଲିସ ହେଡ କ୍ୱାଟରରେ ଇନ୍‌ସପେକ୍ଟର ଦ୍ରୁଭଦୟାଲଙ୍କ ରୁମରେ ଫିମାଣୀ ମଧ୍ୟ ଉପସ୍ଥିତ ଥିଲେ । ସେ ସେଠାରେ ଆଗରୁ ଥିଲେ କି ସୁନୀଲଙ୍କ ପରି ତାଙ୍କୁ ମଧ୍ୟ ଡକା ହୋଇଛି ଜଣା ନାହିଁ ।

ସୁନୀଲ ଦ୍ରୁଭଦୟାଲଙ୍କୁ ନମସ୍କାର କଲେ, କିନ୍ତୁ ସେ ସୁନୀଲ ଆଡ଼କୁ

ଅନାଇଲେ ନାହିଁ । ନିର୍ମାଣୀଙ୍କର ଚେହେରାରୁ ଜଣାଯାଉଥିଲା ଯେ ପ୍ରଭୁଦୟାଳ ଉଭୟଙ୍କ ଉପରେ ରାଗିଛନ୍ତି ।

ସୁନୀଲ ଚୁପ୍‌ଚାପ ନିର୍ମାଣୀ ପାଖରେ ପଡ଼ିଥିବା ଚେୟାର ଉପରେ ବସିଲେ । ପକେଟରୁ ସିଗାରେଟ୍ ବାହାର କରି ଟାଣିଲେ ।

ପ୍ରଭୁଦୟାଳ ନିର୍ମାଣୀ ଆଡ଼କୁ ଅନାଇଲେ । ଜଣାପଡ଼ୁଛି ଦୁଇ ଜଣଙ୍କ ମଧ୍ୟରେ ବୋଧ ହୁଏ କିଛି କଥାବାର୍ତ୍ତା ହୋଇ ନଥିଲା । ତେଣୁ ସୁନୀଲଙ୍କର ଆସିବାରେ ବ୍ୟବଧାନ ଘଟିଛି ।

ସେ ଝିଅ ବିଷୟରେ ତୁମର ଯେତେବେଳେ କହିବା ଉଚିତ ଥିଲା; ସେତେବେଳେ ମୁଁ ଯେଠାକୁ ଯାଇଁଥିଲି । ପ୍ରଭୁ ଦୟାଳ କ୍ରୋଧିତ କଣ୍ଠରେ ନିର୍ମାଣୀଙ୍କୁ କହିଲେ ।

ସୁନୀଲର ଛାତି ଧଡ଼୍ ଧଡ଼୍ ହେଲା । ତାଙ୍କୁ କେହି ନକହିଲେ ମଧ ସେ ଜାଣି ପାରିଲା ଯେ ଅଚଳା ବିଷୟରେ ଚର୍ଚ୍ଚା ହେଉଛି ।

ନିର୍ମାଣୀ ଚୁପ ରହିଲେ ।

ପ୍ରଭୁଦୟାଳ କହିଲେ - ହତ୍ୟା ସମୟରେ ତୁମେ ତ୍ୟାଗୀର ଅଫିସକୁ ଗୋଟିଏ ଝିଅ ଯିବାର ଦେଖିଥିଲ । ତୁମେ ଜଣେ ସାମ୍ବାଦିକ । ଏପରି ମହତ୍ତ୍ୱ ପୂର୍ଣ୍ଣ କଥା କପରି ପୋଲିସକୁ ନଜଣାଇ ଚୁପ ହୋଇ ରହିଲ ।

ନିର୍ମାଣୀ ନରମ ସ୍ୱରରେ କହିଲେ — ମୁଁ ଆପଣଙ୍କୁ ପୂର୍ବରୁ କହିଛି ଯେ ସେ ଝିଅ ରତ୍ୟାଗୀ ସହ କୌଣସି ସଂପର୍କ ନାହିଁ । ମୁଁ ଗୋଟିଏ ଖାନ୍‌ଦାନ୍ ଘରର ଝିଅର ନାମ ଏହି ହତ୍ୟା ଘଟଣାରେ ସଂପୃକ୍ତ କରିବାକୁ ଚାହେଁ ନାହିଁ । ଆପଣଙ୍କ ପାଖରେ ସେପରି କୌଣସି ପ୍ରମାଣ ନାହିଁ ଯେ ସେ ଝିଅକୁ ହତ୍ୟାକାରିଣୀ ବୋଲି ପ୍ରମାଣିତ କରି ପାରିବ ।

ମେକଅପ୍‌ବକ୍‌ସ ଏବଂ ସେହି ଝିଅ ବିଷୟରେ ତୁମର କଥା ଅନୁସାରେ କିଛି ବାଟ ତ କରି ହେବ । ନିର୍ମାଣୀ ତୁମକୁ କହିବାକୁ

ପଢ଼ିବ ଯେ ସେ ଝିଅ କିଏ ? ତୁମେ ଯେତେବେଳେ ଜାଣିଛ ଯେ ସେ ଝିଅ ଖାନଦାନ୍ ଘରର ଝିଅ ତେବେ ତୁମେ ଅବଶ୍ୟ ଜାଣିଥିବ ଯେ ସେ ଝିଅ କିଏ ?

ନିର୍ମାଣୀ ଚୁପ୍ ରହିଲେ ।

ତୁମେ ଯଦି ସେ ଝିଅର ନାମ କହିବ ତେବେ ବରଂ ତୁମର ମଙ୍ଗଳ ହେବ । ତୁମେ ସେ ଝିଅର ନାମ ଲୁଚାଇଲେ ମୋର ତୁମ ଉପରେ ସନ୍ଦେହ ହେବ ।

ମୋ ଉପରେ ସନ୍ଦେହ । ନିର୍ମାଣୀ ଚମକି ପଡ଼ି କହିଲେ ।

କେଜାଣି ସେ ଝିଅର ନାମ ଲୁଚାଇବାରେ ତୁମର ସ୍ୱାର୍ଥ ଥାଇ-ପାରେ କିମ୍ବା ତୁମର ସେ ବନ୍ଧୁ ବାନ୍ଧବ ହୋଇପାରେ । ତେଣୁ ତୁମେ ତାକୁ ପୋଲିସ ଆଖି ସାମନାକୁ ଆଣିବାକୁ ଚାହୁଁନାହଁ ।

ମୁଁ ତୁମକୁ ସେ ଝିଅ କଥା କହି ଭୁଲ କରିଛି । ନିର୍ମାଣୀ କହିଲେ— ମୁଁ କୌଣସି ଝିଅକୁ ତ୍ୟାଗୀ ଅଫିସରେ ଦେଖିଛି ବୋଲି ତୁମକୁ କହିବା ଉଚିତ ନଥିଲା ।

ତୁମେ କ'ଣ କହିବାକୁ ଚାହୁଁଥିଲ ? ତୁମ ମୁହଁରୁ ହଠାତ୍ ବାହାରି ଗଲା ।

ନିର୍ମାଣୀ ଚୁପ ରହିଲେ ।

କୁହ ସେ ଝିଅଟି କିଏ ?

ନିର୍ମାଣୀ ନିରୁତ୍ତର ରହିଲେ ।

ତାହାଲେ ଚୁପ୍ ରହିବାର କିଛି କାରଣ ଅଛି । ସେ କ'ଣ ତୁମର ମାଆ କି ?

"ଇନସପେକ୍ଟର ସାହେବ" – ନିର୍ମାଣୀ ରାଗିଯାଇ କହିଲେ— ଠିକ୍ ଢଙ୍ଗରେ କଥାବାର୍ତ୍ତା କରନ୍ତୁ ।

ମୋତେ ଢଙ୍ଗ ଶିଖାଅ ନାହିଁ । ଦ୍ରୁତ ଦୟାଳ ଗର୍ଜି ଉଠି

କହିଲେ— ବର୍ତ୍ତମାନ ମୁଁ ଢଙ୍ଗରେ କଥାବାର୍ତ୍ତା କରୁଛ । ଯେତେବେଳେ ସେଢଙ୍ଗରେ କଥାବାର୍ତ୍ତା କରିବି ତୁମେ ଏଠି ରହିପାରିବ ନାହିଁ ।

ନିର୍ମାଣୀ ଚୁପ ରହିଲେ ।

ବର୍ତ୍ତମାନ କହୁ କୁହ ?

ନିର୍ମାଣୀ ଦୀର୍ଘ ଶ୍ୱାସ ନେଲେ ।

"ଠିକ୍ ଅଛୁ । ସେ ନରମ ସ୍ୱରରେ କହିଲେ ଶୁଣ...... । କିନ୍ତୁ ସେ ଝିଅର ତ୍ୟାଗୀ ହତ୍ୟା ସହ କୌଣସି ସଂପର୍କ ନାହିଁ । ସେ......

ପ୍ରଭୁଦୟାଳ ବ୍ୟଙ୍ଗ ପୂର୍ଣ୍ଣ ସ୍ୱରରେ କହିଲେ— ଦେଖ ବେଶି ବାଜେ କଥା ନକହି ସତ କୁହ ।

ନିର୍ମାଣୀ କହିଲେ— ସେ ଏ. କେ. ମଜୁମଦାରଙ୍କ ଝିଅ ଅଚଳା ମଜୁମଦାର ଥିଲା ।

ପ୍ରଭୁଦୟାଳ ଆଶ୍ଚର୍ଯ୍ୟ ହୋଇଗଲେ ।

ନିର୍ମାଣି ଚ୍ୟାଲେଞ୍ଜ ଦେଲା ଭଳି କହିଲେ - ଆପଣ ତାର କହୁ କରି ପାରିବେ ନାହିଁ ? ଆପଣ ସେ ଝିଅ ଆଡକୁ ଯଦି ଟିକିଏ ଆଙ୍ଗୁଠି ବଢ଼ାଇବେ, ତାହେଲେ ତାର ବାପା ଆପଣଙ୍କୁ କଞ୍ଚା ଖାଇଦେବ ।

ପ୍ରଭୁଦୟାଳ କହିଲେ— ତୁମେ ଅଚଳା ମଜୁମଦାରକୁ ଜାଣିଲ କିପରି ?

ସେ 'କ୍ଲାଷ୍ଟ'ରେ କାମ କରୁଥିଲା ।

'ଆଇ ସି । ବର୍ତ୍ତମାନ ସବୁ କଥା ଗୁଡ଼ିକ ଶୁଣାଅ ।'

ବାସ୍ ଏଇତ କଥା । ତ୍ୟାଗୀ ଅଫିସର ବାହାର ପଟ ଗଳିରେ ତା ସହିତ ମୋର ଦେଖା ହୋଇଥିଲା । ସେ ଲିଫ୍‌ଟରୁ ବାହାରୁ ଥିଲା ଏବଂ ମୁଁ ସେହି ଆଡକୁ ଯାଉଥିଲି । ମୁଁ ଭାବୁଛୁ ସେ ମୋତେ ଦେଖି ନଥିବ । ମୋ ଆଡକୁ ସେ ଆଡ ଆଖିରେ ବି ଚାହିଁ ନାହିଁ । ସେ ମୋ ପାଖ ଦେଇ ଚାଲିଗଲା ଏବଂ ମୁଁ ତ୍ୟାଗୀର ଅଫିସରେ ପ୍ରବେଶ କରି

ଏପରି ଘଟଣା ଦେଖି ମୁଁ ଚାଲି ଆସିଲି ।

ତୁମେ ତା ସହିତ କଥାବାର୍ତ୍ତା କରିନାହିଁ ।

ନାଁ । ସେ ମୋ ଆଡ଼କୁ ଦୃଷ୍ଟିପାତ କଲାନାହିଁ । ମୁଁ କିଛି କହିବା ପୂର୍ବରୁ ସେ ତ୍ୟାଗୀ ଅଫିସରେ ପ୍ରବେଶ କରି ଯାଇଥିଲା ।

ପ୍ରଭୁଦୟାଲ ଚନ୍ଦ୍ରାକଲେ । "ଅଚଳା ମଜୁମଦାରଙ୍କୁ । ହିଁ"—

ସେ କହିଲେ— ମେଜଅପ୍ ବକ୍ସର ପ୍ରଥମ ଅକ୍ଷର ଏ: ଏମ୍ ।

ସେ ବକ୍ସଟି ନିଶ୍ଚୟ ସେଇ ଝିଅର ହୋଇଥିବ ।

କିନ୍ତୁ ସେଥିରୁ କ'ଣ ପ୍ରମାଣ ହେବ ? କିଛି ନାହିଁ ।

ନ ହେଉ । କିନ୍ତୁ ଆମେ ଯାଣିବା ଉଚିତ୍ ଯେ ଆମକୁ କେହି କୌଣସି କଥା ଲୁଚାଇବା କ'ଣ ଦରକାର ? ସେହି କଥାରେ କିଛି ମହତ୍ତ୍ୱ ଅଛି କି ନାହିଁ ତାହା ମୀମାଂସା କରିବା ଆମର କାମ । ଯାମୁଦାଦଙ୍କର ସେ କାମ ନୁହେଁ ।

ନିମାଣୀ ଚୁପ୍ ରହିଲା ।

ପ୍ରଭୁଦୟାଳ ସୁନୀଲକୁ ଚାହିଁ କହିଲେ— ଆଉ ତୁମେ ଏକ ନମ୍ବର ଅଛ । ମନ ହେଉଛି ତୁମକୁ ଜେଲ ଭିତରେ ଭର୍ତ୍ତି କରି ଦୂର ସମୁଦ୍ରରେ ଫିଙ୍ଗି ଦେବାକୁ ।

ସୁନୀଲ କହିଲେ— କିନ୍ତୁ ମୁଁ କ'ଣ କଲି ?

ପ୍ରଭୁଦୟାଳ ରାଗିଯାଇ କହିଲେ— ତୁମେ ଜାଣନାହିଁ ତୁମେ କଣ କରିଛ ?

"ଜାଣିନାହିଁ । ସେଥିପାଇଁ ତ ପଚାରୁଛି ।"

ତୁମେ ପୋଲିସ ଆସିବା ପୂର୍ବରୁ ତ୍ୟାଗୀ ଅଫିସରେ ପଶି ନ ଥିଲ?

ସୁନୀଲ ମୁହଁରୁ ବାହାରି ପଡ଼ିଲା— ଆପଣ କପରି ଜାଣିଲେ ?

ପ୍ରଥମେ କୁହ । ତୁମେ ତ୍ୟାଗୀ ଅଫିସକୁ ଯାଇଥିଲ କି ନାହିଁ ?

କିନ୍ତୁ ଆପଣ କପରି ଜାଣିଲେ ? ସୁନୀଲ ପଚାରିଲେ । ତାଙ୍କର ଆଖି ଆଗରେ କେଦାରନାଥ ଧମକ ଦେଇଥିବା କଥା ନାଚୁଥାଏ ।

ମୋତେ କୌଣସି ସ୍ଥାନରୁ ସମ୍ବାଦ ମିଳିଛି । ବର୍ତ୍ତମାନ କୁହ ।

ଆପଣ ପ୍ରମାଣ କରି ପାରିବେ ଯେ ପୋଲିସ ପହଞ୍ଚିବା ପୂର୍ବରୁ ମୁଁ ତ୍ୟାଗୀ ଅଫିସକୁ ଯାଇଥିଲି ବୋଲି ?

ବେଶି କଥାବାର୍ତ୍ତା କରନାହିଁ । ପ୍ରଶ୍ନ ବଦଳରେ ମୋତେ ପ୍ରଶ୍ନ କର ନାହିଁ । ଯାହା ପଚାରୁଛୁ ସତ କଥା କୁହ ।

ସୁନୀଲ ଭାବିଲା । ବର୍ତ୍ତମାନ ଚୁପ୍ ରହି କିଛି ଲାଭ ନାହିଁ । ଓଲଟା ପ୍ରଭୁଦୟାଲଙ୍କର ରାଗ ବଢ଼ିଯିବ । ସେ ଆଗରୁ କିମାଣୀ କହିବାର ଶୁଣିଥିଲା ଯେ ସେ ଅଚଳାକୁ ତ୍ୟାଗୀର ଅଫିସକୁ ଯିବାର ଦେଖିଥିଲା । ବର୍ତ୍ତମାନ ସତ କହିଲେ ହିଁ ତାଙ୍କୁ ମଙ୍ଗଳ ହେବ ।

ପ୍ରଭୁଦୟାଲ କହିଲେ – ଆରେ ବର୍ତ୍ତମାନ ତ କିଛି କୁହ ।

ସୁନୀଲ ସ୍ୱୀକାର କଲା— ତୁମର କଥା ଠିକ୍ । ପୋଲିସ ଆଗମନ ପୂର୍ବରୁ ମୁଁ ତ୍ୟାଗୀ ଅଫିସକୁ ଯାଇଥିଲି ।

କାହିଁକି ?

ଏମିତି ତା ସହିତ ଦେଖା କରିବାକୁ । ସେତେବେଳକୁ ମୁଁ ଜାଣି ନ ଥିଲି ଯେ ସେ ମରିଯାଇଛି ବୋଲି । ମୁଁ ତା'ର ଶବ ଦେଖି ଡରିଗଲି ।

ତୁମେ ସେଠାରେ ଫଟୋ ମଧ୍ୟ ଉଠାଇ ଥିଲ ?

"ହଁ । ମୋ ପାଖରେ କ୍ୟାମେରା ଥିଲା, ମୁଁ ଦୁଇ ତିନୋଟି ଫଟୋ ଉଠାଇଛି ।

"ତୁମେ ସେତେବେଳେ କମର୍ସିଆଲ ଷ୍ଟ୍ରିଟକୁ କାହିଁକି ଯାଇଥିଲ ?

"ଡାକସା ପ୍ରୋସେସନର ଫଟୋ ଉଠାଇବାକୁ ଯାଇଥିଲି ।"

ଡାକସା ପ୍ରୋସେସନର ଫଟୋ ସହରର ଅନ୍ୟ ସ୍ଥାନରେ ମଧ୍ୟ ଉଠାଇ ପାରିଥାନ୍ତ । ତୁମେ କମର୍ସିଆଲ ଷ୍ଟ୍ରିଟ୍‌କୁ କାହିଁକି ଯାଇଥିଲ ?

"ସେଇଁଠି ହେଲେ ତ ଫଟୋ ଉଠାଇ ଥାନ୍ତି, ତେଣୁ ମୁଁ କମର୍ସିଆଲ ଷ୍ଟ୍ରିଟକୁ ଚାଲିଗଲି, ଯଦି ଅନ୍ୟ କୌଣସି ସ୍ଥାନକୁ ଯାଇଥାନ୍ତି ଏବଂ ସେଠାରେ କୌଣସି ଘଟଣା ଘଟିଥାନ୍ତା; ତେବେ ଆପଣ ମୋତେ

ପଚ୍ଛରେ ଥାଆନ୍ତେ ଯେ ସେଠାକୁ କାହିଁକି ଯାଇଥିଲି ? ସେତେବେଳେ କ'ଣ ମୁଁ ଜାଣିଥିଲି ଯେ ତ୍ୟାଗୀର ଖୁନ୍ ହେବ ବୋଲି ?

"ତୁମେ ଶପଥ କରି କହିବ ଯେ ତ୍ୟାଗୀ ଅଫିସରେ ପହଞ୍ଚିବା ପୂର୍ବରୁ ତୁମେ ଜାଣି ନ ଥିଲ ତ୍ୟାଗୀର ହତ୍ୟା ହୋଇଛି ବୋଲି ।

"ଦେଖନ୍ତୁ – ସୁଶୀଲ ଗମ୍ଭୀର ହୋଇ କହିଲା— ଆପଣ କ'ଣ କହିବାକୁ ଚାହାନ୍ତି ଯେ ମୁଁ ତ୍ୟାଗୀକୁ ହତ୍ୟା କରିଛି । ଯଦି ତା ନୁହେଁ ତେବେ ମୁଁ ଆପଣଙ୍କ ସମୁଖରେ ଯେଉଁ ଦୋଷ କରିଛି ମୋତେ କ୍ଷମା ଦିଅନ୍ତୁ ।

"କାହିଁକି କ୍ଷମା କରିବ ?"

ତା ବଦଳରେ ମୁଁ ଆପଣଙ୍କୁ ଗୋଟିଏ ଭଲ ସମ୍ବାଦ ଦେବି ।

କ'ଣ ?

ମୁଁ ଆପଣଙ୍କୁ କମର୍ସିଆଲ ଷ୍ଟ୍ରିଟରେ ଉଠାଇଥିବା ଏମିତି ଗୋଟିଏ ଫଟୋ ଦେବି; ଯାହାକୁ କି ତିନି ଜଣ ଲୋକ ଅନେକ ମୂଲ୍ୟ ଦେଇ ମଧ୍ୟ ପାଇ ପାରିନାହାନ୍ତି ।

"ତିନି ଜଣ କିଏ ?"

"ସେମାନଙ୍କ ମଧ୍ୟରୁ ଜଣେ କେଦାରନାଥ । ଅନ୍ୟ ଦୁଇଜଣ ପ୍ୟାରେଲାଲ । "

"ତା ଅର୍ଥ ?"

ମୁଁ ସେ ଦୁଇଜଣଙ୍କୁ ଜାଣେ ନାହିଁ, କିନ୍ତୁ ଦୁହେଁ ନିଜର ନାମ ପ୍ୟାରେଲାଲ ବୋଲି କହିଥିଲେ ।

"ତାଙ୍କ ବିଷୟରେ କିଛି କୁହ" ।

ସୁଶୀଲ ସବୁକଥା କହିଲେ ।

"ସେ ଫଟୋ କାହିଁ ?"

ବର୍ତ୍ତମାନ ଫଟୋ ଧୂଆ ହୋଇନାହିଁ । ମୁଁ 'ବ୍ଲାଷ୍ଟ'ର ଅନ୍ୟ ଜଣେ ଫଟୋଗ୍ରାଫରଙ୍କୁ ଦେଇଛି । ସେଇଟା ଧୂଆ ସରିଲେ ମୁଁ ଆପଣଙ୍କୁ ଦେବି ।

"ଆଜି ତୁମର ଅଚଳା ମଜୁମଦାର ସହିତ ଦେଖା ହୋଇଥିଲା ?

"ନାଁ । କାହିଁକି ?"

ମୋର ବିଶ୍ୱାସ ତ୍ୟାଗୀ ସହ ଦେଖା କରିବା ପାଇଁ ତୁମେ ତାଙ୍କ ଫ୍ଲାଟକୁ ଯାଇ ନ ଥିଲ । ଅଚଳା ମଜୁମଦାର 'ବ୍ଲାଷ୍ଟ' ଅଫିସରେ କାମ କରୁଥିଲା, ତେଣୁ ତୁମର ସହିତ ତାର ନିଶ୍ଚୟ ଭଲ ଭାବେ ପରିଚିତ ଥିଲା । ହୁଏତ ସେ ଝିଅ ତ୍ୟାଗୀକୁ ହତ୍ୟାକରିଥିବ ଏବଂ କମର୍ସିଆଲ ଷ୍ଟ୍ରିଟରେ ତୁମ ସହିତ ତାର ଦେଖା ହୋଇଥିବ । ସେ ତୁମକୁ କହିଥିବ ଯେ ତାର ମେକଅପ୍ ବକ୍ସଟି ଘଟଣାସ୍ଥଳରେ ପଡ଼ି ଯାଇଛି ଏବଂ ସେହି ବକ୍ସଟି ତାକୁ ହତ୍ୟାକାରିଣୀ ବୋଲି ପ୍ରମାଣିତ କରିପାରେ । ତେଣୁ ସେ ତୁମଠାରୁ ସାହାଯ୍ୟ ଭିକ୍ଷା କରିଥିବ ଏବଂ ତୁମେ ସେହି ମେକଅପ୍ ବକ୍ସକୁ ସେଠାରୁ ଆଣିବାକୁ ତ୍ୟାଗୀର ଫ୍ଲାଟକୁ ଯାଇଥିବ ।

"ତା ହେଲେ ମୁଁ ମେକଅପ୍ ବକ୍ସ ସେଠାରୁ ଆଣିଲି ନାହିଁ କାହିଁକି ?

ତୁମେ ସେଠାରେ ଫଟୋ ଉଠାଇବାରେ ବ୍ୟସ୍ତ ଥିଲ, ତେଣୁ ମେକଅପ୍ ବକ୍ସ ତୁମେ ଦେଖି ପାରି ନ ଥିବ ।

ସେହି ସମୟରେ ଜଣେ ସିପାହୀ ହାତରେ ଗୋଟିଏ ଗ୍ରେଟ ପୁଡ଼ିଆ ନେଇ ସେଠାରେ ପ୍ରବେଶକଲା ଏବଂ କହିଲା— ଆଜ୍ଞା ପରୀକ୍ଷାଗାରରୁ ଆସିଛି ।

ଚନ୍ଦ୍ରଦୟାଲ ତାକୁ ଖୋଲି ଦିବାକୁ କହିଲେ । ପୁଡ଼ିଆ ଖୋଲିଲେ । ସେଥିରୁ ତୁଳାରେ ପ୍ୟାକ ହୋଇଥିବା ଦୁଇଟି ଗୁଳି ପାଇଲେ । ସେ ଗୁଳିକୁ ଦେଖାଇ କହିଲେ— ଏ ସେଇ ଗୁଳି ଯେଉଁଥିରେ କି ତ୍ୟାଗୀର ହତ୍ୟା କରାଯାଇଥିଲା । ପୋଷ୍ଟମର୍ଟମ କରିଥିବା ଡ଼ାକ୍ତର ଏଇଟା ତ୍ୟାଗୀ ଦେହରୁ ବାହାର କରିଛନ୍ତି ।

ସୁନୀଲ ଚମକି ପଡ଼ିଲା । ସେ ଭାବିଲା ମୁଁ ଆଗରୁ କାହିଁକି ଏ ବିଷୟରେ ଚିନ୍ତା କଲି ନାହିଁ । ଏ ସାଧାରଣ କଥା କାହିଁକି ମୋ ମୁଣ୍ଡରେ

ପଶିଲ ନାହିଁ ।

"ସେ କହିଲ— ମୁଁ ଫୋନ କରିପାରେ କି ? ପ୍ରଭୁଦୟାଲଙ୍କ ଉତ୍ତରକୁ ଅପେକ୍ଷା ନ କରି ସେ ଫୋନ ଉଠାଇଲ ।

ପ୍ରଭୁଦୟାଲ ମଧ୍ୟ ମନା କଲେ ନାହିଁ ।

ସୁନୀଲ 569484କୁ ଟେଲିଫୋନ କରି ପଚାରିଲେ— ଅଚଳା ମଜୁମଦାର ଅଛନ୍ତି ?

ପ୍ରଭୁଦୟାଲ କାନପାରି ଶୁଣିଲେ ।

"ସେ ନାହିଁ ?"— ସୁନୀଲ କହିଲେ— କୁଆଡେ ଯାଇଛନ୍ତି ? ବିଶ୍ୱନଗର । ତା ମାଉସୀ ଘରକୁ । ସେଠାକାର ନମ୍ବର ? ଓଃ ଭେ. ଥ୍ୟାଙ୍କ୍ୟୁ ।"

ସୁନୀଲ ଫୋନ ରଖିଲେ ।

ବର୍ତ୍ତମାନ ବିଶ୍ୱନଗର ଫୋନ କରିବ ?— ପ୍ରଭୁଦୟାଲ କହିଲେ ।

"ବ୍ୟସ୍ତ ହୁଅନ୍ତୁ ନାହିଁ । ପଇସା ଦେଇଦେବି" ସୁନୀଲ କହିଲେ । ସେ ବିଶ୍ୱନଗର ଫୋନ କଲେ । ଅଚଳା ଫୋନ ଉଠାଇଲେ ।

"ସୁନୀଲ କହିଲେ— ଅଚଳା, ମୁଁ ସୁନୀଲ କହୁଛି । ତୁମେ ବିଶ୍ୱନଗର କିପରି ଗଲ ?"

"ସ୍ୱପ୍ନ ଆସିଲ— ଅଚଳା କହିଲେ— କ'ଣ ଖବର ?"

ଏଠାକୁ ଆସିଲେ ସବୁ କଥା ଜାଣି ପାରିବ । ତୁମେ ଶିଘ୍ର ରାଜନଗର ପୋଲିସ ହେଡ଼କ୍ୱାର୍ଟରରେ ଆସି ପହଞ୍ଚ ।

କିନ୍ତୁ ମୁଁ ବର୍ତ୍ତମାନ ଏଠାକୁ ଆସିଛି । କିପରି ଯିବ ?

"ତୁମେ ଏଠାକୁ ଫେରିଆସ; ତଦ୍ୱାରା ତୁମର ମଙ୍ଗଳ ହେବ ।

କିନ୍ତୁ ମୁଁ କିପରି ଏତେଶିଘ୍ର ପହଞ୍ଚିବ ।

ଯେମିତି ହେଉ । ଉଡାଜାହାଜରେ ଆସ କି ରକେଟରେ ଆସ । ସେଠାରୁ ଶିଘ୍ର ସ୍ୱପ୍ନଆସ । ତୁମେ କାହିଁକି ସହର ଛାଡ଼ି ସ୍ୱପ୍ନଗଲ । ତୁମର ଯିବା ଉଚିତ ନ ଥିଲା ।

"କିନ୍ତୁ କୁହ କଥା କ'ଣ ?"

"ଏଠାକୁ ଆସିଲେ ସବୁ ଜାଣି ପାରିବ ।"

ସୁମାଲ ଗସିଭର ରଖିଦେଲେ ।

ପ୍ରଭୁଦୟାଲ କହିଲେ— 'କଥା କ'ଣ ?'

ଅଚଳା ଆସୁ । କଥାଟା ବଳେ ଜଣା ପଡ଼ିଯିବ । ତାକୁ ଆପଣଙ୍କର ସୁବିଧା ପାଇଁ ଏଠାକୁ ଡକାଇଛୁ । ଆପଣଙ୍କର ତ ସନ୍ଦେହ ଦୂର ହେବ ।

ପ୍ରଭୁଦୟାଲ କିଛି କହିଲେ ନାହିଁ । ସେ ଜାଣିଲେ ଯେ ସୁମାଲ ଯାହା କହୁଛି ଠିକ୍ କଥା ।

ରୁକ୍ମିଣୀ କହିଲେ - "ମୁଁ ଯାଉଛି ।"

'ହଁ' — ପ୍ରଭୁଦୟାଲ ସମ୍ମତି ଜଣାଇଲେ ।

ରୁକ୍ମିଣୀ ବାହାରକୁ ଚାଲିଗଲେ ।

ପ୍ରଭୁଦୟାଲ ସୁମାଲକୁ କହିଲେ— କେତେ ସମୟ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେବ ।

ସୁମାଲ କହିଲେ— "ଯେତେବେଳ ପର୍ଯ୍ୟନ୍ତ ଅଚଳା ଏଠାରେ ନ ପହଞ୍ଚିଛି ।" ଆପଣ ଅପେକ୍ଷା ନ କରି ପାରନ୍ତି ମୋର କିଛି ଆପତ୍ତି ନାହିଁ ।"

"ଯେତେବେଳ ପର୍ଯ୍ୟନ୍ତ ସେ ନ ଆସିବ ତୁମେ କ'ଣ କରିବ ?'

ଏଠାରେ ବସି ତାକୁ ଅପେକ୍ଷା କରିବି । ଯଦି ଏଠାରେ ବସିବାକୁ ଆପଣ ମନା କରିବେ, ତେବେ ମୁଁ ଫୁଟପାଥରେ ବସି ତାକୁ ଅପେକ୍ଷା କରିବି ।

"ମୁଁ କ'ଣ ମନା କରୁଛି ?"

"ଧନ୍ୟବାଦ ।"

ସୁମାଲ ଖଣ୍ଡେ ସିଗାରେଟ ବାହାର କରି ଟାଣିଲେ ।

ପ୍ରଭୁଦୟାଲ କହିଲେ—'ମୋତେ କ୍ଷମା କର ।'

ଆପଣ ସିଗାରେଟ ଖାଆନ୍ତି ?

'କେବେ ମନ ହେଲେ ଟାଣେ ।'

ସୁନୀଲ ତାଙ୍କୁ ସିଗାରେଟ ଦେଲେ । ଦୁହେଁ ସିଗାରେଟ ଟାଣିଲେ ।

'ସୁନୀଲ କହିଲେ—ଆରେ ମୁଁ ଗୋଟିଏ କଥା ଭୁଲି ଯାଇଛି ।'

କ'ଣ ? ପ୍ରଭୁଦୟାଲ ପଚାରିଲେ –

ସୁନୀଲ ନିଜ ପ୍ୟାଣ୍ଟର ପଛପକେଟରୁ ରୁମାଲରେ ଗୁଡ଼ା ହୋଇଥିବା ରିଭଲଭର ବାହାର କରି ଟେବୁଲ ଉପରେ ରଖି ଦେଲେ ।

ପ୍ରଭୁଦୟାଲ କହିଲେ—ଏ ରିଭଲଭର ?

ସୁନୀଲ ତାଙ୍କୁ ସମସ୍ତ ଘଟଣା କହିଲେ ।

ଏଥିରେ ପ୍ୟାରେଲାଲ ନମ୍ବର ଦୁଇର ଆଙ୍ଗୁଠି ଚିହ୍ନ ଅଛି, ବୋଲି ସୁନୀଲ କହିଲେ ଏବଂ ଆଉମଧ କହିଲେ ଯେ ଯଦି ଆପଣ ସନ୍ଧାନ ନେବେ ତା ସମ୍ବନ୍ଧରେ କୌଣସି ପୋଲିସ ରେକର୍ଡ଼ ଅଛି ବୋଲି ଜଣା ପଡ଼ିପାରେ ଏବଂ ରିଭଲଭର ନମ୍ବର ଦ୍ୱାରା ତା ମାଲିକର ନାମ ମଧ୍ୟ ଜଣା ପଡ଼ିପାରେ ।

ପ୍ରଭୁଦୟାଲ ସମ୍ମତ ହୋଇ ମୁଣ୍ଡ ହଲାଇଲେ ।

ସେ ରିଭଲଭରକୁ ପୋଲିସ ପରୀକ୍ଷାଗାରକୁ ପଠାଇ ଦେଲେ ।

**

ଭୟଭୀତହୋଇ ଅଚଳା ମଜୁମଦାର ଇନସ୍‌ପେକ୍ଟର ପ୍ରଭୁଦୟାଲଙ୍କ ରୁମ୍‌ରେ ପ୍ରବେଶ କଲେ । ଆସିବାକ୍ଷଣି ଚେୟାରରେ ବସିପଡ଼ି ଦୀର୍ଘଶ୍ୱାସ ନେଲେ ।

ସୁନୀଲ କହିଥିବା ସମୟରେ ଖୁବ୍ ଶୀଘ୍ର ସେ ସେଠାରେ ପହଞ୍ଚି ଥିଲେ । ନିଶ୍ଚୟ ସେ କୌଣସି ପ୍ଲେନରେ ଆସିଥିବେ ।

ସୁନୀଲ କହିଲେ – ଧନ୍ୟବାଦ ।

ସେ ଚୁପ୍ ରହିଲା । ସେ ଭୟଭୀତ ହୋଇ ପ୍ରଥମେ ଇନସ୍‌ପେକ୍ଟର ପ୍ରଭୁଦୟାଲଙ୍କ ଆଡ଼କୁ ଏବଂ ସୁନୀଲ ଆଡ଼କୁ ଅନାଇ ଥାଆନ୍ତି ।

ସୁନୀଲ ତାଙ୍କର ଦୃଷ୍ଟିଭଙ୍ଗୀ ଜାଣିପାରି କହିଲେ – ଭୟ କର ନାହିଁ । ତୁମେ ନିରାପଦ । ମୁଁ ତୁମକୁ ବିପଦରେ ପକାଇବା ପାଇଁ ଡାକି ନାହିଁ । ବିପଦ ମୁକ୍ତ କରିବାକୁ ଡାକିଛି ।

ଅଚଳା ଚୁପ୍ ରହିଲେ । କିନ୍ତୁ ତାଙ୍କର ଚେହେରାରୁ ଭୟଭାବ ଯାଇ ନ ଥିଲା ।

ସୁନୀଲ ପଚାରିଲେ – ଆଜି ଦ୍ୱିପହରରେ ତୁମେ ଯେତେବେଳେ ତ୍ୟାଗୀର ଅଫିସରେ ପହଞ୍ଚି ଥିଲ ଗଳି ପାଖରେ କାହାରିକୁ ଦେଖିଥିଲକି ?

ଅଚଳାର ମୁହଁ ଫିକା ପଡ଼ିଗଲା ।

ଅଚଳା କହିଲା—ତା'ହେଲେ……ତା'ହେଲେ ତୁମେ ଏମାନଙ୍କୁ ସବୁକିଛି କହି ଦେଇଛ ?

'ବିଶ୍ୱାସ କର ମୁଁ ଏମାନଙ୍କୁ ସେହି କଥା କିଛି କହି ନାହିଁ ।' ଯାହା ସେମାନଙ୍କୁ ଆଗରୁ ଜଣା ନ ଥିଲା ।

ଓ ।

"ମୋ ପ୍ରଶ୍ନର ଉତ୍ତର ଦିଅ । ଗଳି ପାଖରେ ତୁମେ କାହାକୁ ଦେଖିଥିଲ କି ?"

"ମୁଁ ତୁମର ଆସିଷ୍ଟାଣ୍ଟ ଏଡ଼ିଟର ନିମାଣୀଙ୍କୁ ଦେଖିଥିଲି ।"

ଚନ୍ଦ୍ରଦୟାଳ ପଚାରିଲେ—"ସେ ସେଠାରେ କ'ଣ କରୁଥିଲେ ?"

"ସେ ତ୍ୟାଗୀର ଅଫିସରୁ ବାହାରକୁ ଆସୁଥିଲେ । ମୁଁ ତାଙ୍କର ପାଖ ଦେଇ ଚାଲିଗଲି । ମୁଁ ଅନୁଭବ କଲି ନିମାଣୀ ବୋଧହୁଏ ସେଠାରେ ଅଛନ୍ତି । କିନ୍ତୁ ସେତେବେଳକୁ ସେ ଲିଫ୍ଟରେ ଚଢ଼ିସାରିଥିଲେ ।

ତା'ପରେ ଆପଣ ତ୍ୟାଗୀର ଅଫିସକୁ ଗଲେ ।

'ହଁ ।'

ତା'ପରେ ଆପଣ ତ୍ୟାଗୀ ଉପରକୁ ଗୁଳିଚାଳନା କରିଥିଲେ ?

ଅଚଳା ଚମକି ପଡ଼ିଲା । ସେ ଅସହାୟ ହୋଇ ସୁନୀଲ ଆଡ଼କୁ ଚାହିଁଲା । ସେ ଭାବିଲା ସୁନୀଲ ତାକୁ ବିପଦରେ ପକାଇ ଦେଲେ ।

ପ୍ରଭୁଦୟାଲ ନମ୍ରତା ସ୍ୱରରେ କହିଲେ – ‘ଆପଣ ଟାଗୀକୁ ମାରି ଦେଇଥିଲେ ।’

“ହଁ ।”

ପ୍ରଭୁଦୟାଲ ଦୀର୍ଘନିଶ୍ୱାସ ନେଲେ । ସେ ଆନନ୍ଦିତ ହେଲେ ଯେ ଏତେ ସହଜରେ ସେ ମାନିଯାଉଛି ।

“ମୁଁ ଷ୍ଟେନୋଗ୍ରାଫରକୁ ଡାକୁଛି” । ସେ କହିଲେ—

ଆପଣଙ୍କୁ ଜମାନବନ୍ଦୀ ଦେବାକୁ ହେବ ଏବଂ କଲିଂବେଲ ଆଡକୁ ହାତ ବଢାଇଲେ ।

ସୁନୀଲ କହିଲା— ‘ରୁହନ୍ତୁ’

“ପ୍ରଭୁଦୟାଲ୍ ଅଟକି ଗଲେ । ସେ ପ୍ରଶ୍ନସୂଚକ ଦୃଷ୍ଟିରେ ସୁନୀଲ ଆଡକୁ ଚାହିଁ ରହିଲେ ।

ସୁନୀଲ କହିଲା— ପ୍ରଥମେ ସବୁ କଥା ଶୁଣି ସାରନ୍ତୁ, ପରେ ଜମାନବନ୍ଦୀ ରେକର୍ଡ଼ କରିବେ ।

କ’ଣ ?

ଆପଣ ଭୁଲନ୍ତୁ ନାହିଁ ଯେ ଅଚଳା ମୋ ଯୋଗୁ ଏଠାକୁ ଆସିଛନ୍ତି । ଆପଣ ତ ତାଙ୍କୁ ଏଠାକୁ ଡକାଇ ପାରି ନ ଥାନ୍ତେ ।

ସମସ୍ତ ଲଗିଥାଆନ୍ତା । ପ୍ରମାଣ ପାଇ ସାରିଲା ପରେ ଡାକି ଥାଆନ୍ତି ।

ନିଶ୍ଚୟ ଡାକି ଥାଆନ୍ତେ, କିନ୍ତୁ ତାଙ୍କ ସହିତ ତାଙ୍କର ବାପା ଆସି ଥାଆନ୍ତେ ଏବଂ ସହରର ପ୍ରତିଷ୍ଠିତ ଓକିଲ ମଧ୍ୟ ଆସି ଥାଆନ୍ତେ । ସେତେବେଳେ ଆପଣ ତାଙ୍କର ଅପରାଧ କ’ଣ ବୋଲି ମଧ୍ୟ ପଚାରି ପାରି ନ ଥାନ୍ତେ ।

“ପ୍ରଭୁଦୟାଲ କହିଲେ ତୁମେ କ’ଣ ଚାହୁଁଛ ?”

“ପ୍ରଥମେ ଧୈର୍ଯ୍ୟ ଧରି ସବୁ କଥା ଶୁଣନ୍ତୁ ।”

"କୁହ ।"

ଅଚଳାକୁ ବ୍ଲାକମେଲ୍ କରିବା କଥା ସୁଶୀଲ ତାଙ୍କୁ କହିଲେ ।

ସୁଶୀଲ କହିଲେ— ସେ ଚିଠି ଗୁଡ଼ିକ ପୋଲିସ ନିଶ୍ଚୟ ହସ୍ତଗତ କରିବେ କିମ୍ବା କରି ସାରିଥିବେ । ଭଲହେବ ଯେ ଜଣେ ଶାନ୍ତ ଭଦ୍ର ଝିଅର ଇଜ୍ଜତ ରକ୍ଷା କରିବା ପାଇଁ ତାର ଅସ୍ତିତ୍ୱକୁ ଗୁପ୍ତ ରଖାଯାଉ ଏବଂ ଅଚଳା ଫେରିଯାଆନ୍ତୁ ।

ତା' କିପରି ହେବ ? ଯଦି ଚିଠି ସବୁ ତାଙ୍କ ବିରୋଧରେ ପ୍ରମାଣ ମିଳେ ଏବଂ ଅଦାଲତକୁ ପେଶ୍ କରିବାକୁ ପଡ଼େ ?

"ଏପରି ପରିସ୍ଥିତି ଆସିବ ନାହିଁ ।"

"ତୁମେ କ'ଣ ଜାଣ ?"

ମୁଁ ଜାଣେ । ପ୍ରଥମେ ଆପଣ ଅଚଳା ଠାରୁ ସବୁ କଥା ଶୁଣନ୍ତୁ ପ୍ରକୃତରେ କ'ଣ ହୋଇଛି ।

"କୁହନ୍ତୁ" — ପ୍ରଭୁଦୟାଲ କହିଲେ ।

ଅଚଳା ସୁଶୀଲକୁ ଯାହାସବୁ କହିଥିଲେ ସେହିକଥା ସବୁ ପ୍ରଭୁଦୟାଲଙ୍କୁ କହିଲେ ।

ଅଚଳା କହିଲେ— ମୁଁ ତ୍ୟାଗୀକୁ କହିଲି ମୋର ଚିଠି ତୁମ ପାଖରେ ନାହିଁ ତୁମେ ମିଛ କହୁଛ । ଏହା ଶୁଣି ସେ ଅଟ୍ଟହାସ କରି ତା ଭିତରୁ ଚିଠି ଗୁଡ଼ିକ ବାହାର କରି ମୋତେ ଦେଖାଇଲେ । ମୁଁ ଚିଠିଗୁଡ଼ିକ ତାଙ୍କ ଠାରୁ ହାସଲ କରିବା ପାଇଁ ରିଭଲଭର ଦେଖାଇ ତାଙ୍କୁ ଧମକାଇଲି । ସେ ଭାବିଲା ମୋର ଗୁଳି ମାରିବାକୁ ସାହସ ହେବ ନାହିଁ । ତେଣୁ ସେ ଖରାପ ମନୋଭାବ ନେଇ ମୋ ଆଡ଼କୁ ଅଗ୍ରସର ହେଲା । ସେ ମୋ ମନା କରିବା ସତ୍ତ୍ୱେ ଆଗକୁ ବଢ଼ିଲା । ତେଣୁ ମୁଁ ପଛେଇ ପଛେଇ ଅଫିସର ବାହାର ଆଡ଼କୁ ଆସିଲି । ସେ ମୋ ଉପରେ ଅତ୍ୟାଚାର କରିବାକୁ ଆସିବାରୁ ମୁଁ ରିଭଲଭରର ସୁଇଚ ଟିପି ଦେଲି । ଜୋରରେ ଶବ୍ଦ ହେଲା । ରିଭଲଭର୍ ମୋ ହାତରୁ ପଡ଼ି ପଡ଼ି ରହିଗଲା

ତାପରେ ସେ ମୋ ସାମନାରେ ତଳେ ପଡ଼ିଗଲା ।

ସୁନୀଲ କହିଲେ— "ତୁମେ କେତେ ଥର ଗୁଳି ଚଳେଇଥିଲ ?"

ଦୁଇଥର ବୋଲି ମୁଁ ଆଗରୁ ଆପଣଙ୍କୁ କହିଥିଲି ।

ସୁନୀଲ ବିଜୟୀ ସ୍ୱରରେ କହିଲେ – ଦ୍ୟାଟସ୍ ଦେଟ୍ କ୍ଲୁ ଇଟ୍ । ଏହି ଜଣକ କଥାରୁ ପ୍ରମାଣ ମିଳୁଛି ଯେ ଅଚଳା ତ୍ୟାଗୀର ହତ୍ୟା କରିନାହାନ୍ତି ।

ଦ୍ରଭିଦୟାଲ ଚମକି ପଡ଼ି କହିଲେ— କାରଣ ?

ଅଚଳା ମଧ୍ୟ ଆତୁର ଆଶ୍ଚର୍ଯ୍ୟ ହୋଇ ସୁନୀଲ ଆଡକୁ ଅନାଇ ରହିଲା ।

ସୁନୀଲ କହିଲେ— ଯେତେବେଳେ ସିପାହୀ ତ୍ୟାଗୀର ଶରୀରରୁ ପୋଷ୍ଟମର୍ଟମ ଦ୍ୱାରା ବାହାରିଥିବା ଗୁଳି ନେଇ ଆସିଲା ମୁଁ ସେତେବେଳେ ଏ କଥା ଜାଣି ପାରିଥିଲି ଏବଂ ମୁଁ ମୂର୍ଖଙ୍କ ପରି ବୁଝିଲି ଯେ ଗୁଳି ତ୍ୟାଗୀ ଶରୀରର ଆରପଟକୁ ବାହାରି କାନ୍ଥରେ ବାଜିଥିଲା । କିନ୍ତୁ ସେମିତି ହୋଇ ନାହିଁ ବୋଲି ମୁଁ ସେତେବେଳେ ଜାଣିଲି ଯେତେବେଳେ କି ସିପାହୀ ତୃତୀୟ ଗୁଳି ନେଇ ଆସିଲା ।

"ତୃତୀୟ ଗୁଳି ?"

ହଁ । ତୃତୀୟ ଗୁଳି । ଦ୍ରଭିଦୟାଲ, ମନେ ପକାନ୍ତୁ ଦୁଇଟି ଗୁଳି ତ ଘଟଣାସ୍ଥଳରେ ଝରକା ପାଖ କାନ୍ଥରେ ଫୁଟି ପଡ଼ି ଥିଲା ଏବଂ ବର୍ତ୍ତମାନ ଅଚଳା କହିଲେ ଯେ ସେ ଦୁଇଟି ଗୁଳି ଚଳାଇଛନ୍ତି । ତେବେ ଏ ତୃତୀୟ ଗୁଳି କେଉଁଠୁ ଆସିଲା ?

ଦ୍ରଭିଦୟାଲ କହିଲେ – ମିସ୍ ମଜୁମଦାର ମୋ ଆଡେ ଦେଖନ୍ତୁ । ସୁନୀଲ ବର୍ତ୍ତମାନ ଜାଣିଲେ, କିନ୍ତୁ ମୁଁ ଆଗରୁ ଜାଣିଛି ଯେ ତିନୋଟି ଗୁଳି ଚାଲିଛି । ଆପଣ ଭୁଲି ଯାଉଛନ୍ତି । ଆପଣ ନିଶ୍ଚୟ ତିନୋଟି ଗୁଳି ଚଳାଇଛନ୍ତି ।

ନା । ମୋର ଭଲଭାବେ ମନେ ଅଛି, ମୁଁ ଦୁଇଟି ଗୁଳି ଚଳାଇଛି

ଅଚଳା କହିଲେ ।

ଆପଣ ସେତେବେଳେ ଉତ୍ତେଜିତ ହୋଇଯାଇଥିଲେ । ଗୋଟିଏ ପରେ ଗୋଟିଏ ଗୁଳି ଆପଣ ଚଳାଇଛନ୍ତି । ଆପଣ ତିନଥର ଗୁଳି ଚଳାଇ ଥିବେ ହୁଏତ ଆପଣଙ୍କର ମନେ ନ ଥିବ ।

ନାଁ । ମୋର ଭଲଭାବେ ମନେ ଅଛି ମୁଁ ଦୁଇଥର ଗୁଳି ଚଳାଇଛି ।

ଠିକ୍ ଅଛି । ଆପଣ ଜିଦ୍ କରି କହୁଛନ୍ତି ସତ, କିନ୍ତୁ ଆପଣଙ୍କର ଜିଦ୍ ଏହି ପରିଣାମକୁ ବଦଳାଇ ପାରିବ ନାହିଁ । ଆପଣ ଦୁଇଟି ଗୁଳି ଚଳାନ୍ତୁ କିମ୍ବା ତିନୋଟି ଗୁଳି ଚଳାନ୍ତୁ, ଆପଣ ତ୍ୟାଗୀକୁ ହତ୍ୟା କରିଛନ୍ତି ।

ସୁନୀଲ କହିଲେ—'ତ୍ରିଭୁବନଦୟାଳ' – ସେ ଦୁଇଟି ମାତ୍ର ଗୁଳି ଚଳାଇଛି ସେ ମିଛ କହୁନାହିଁ । ଏହି ଘଟଣା ଘଟିବା ଆଗରୁ ଆଗରୁ ସେ ମୋତେ ମଧ୍ୟ କହିଥିଲା ଯେ ଦୁଇଟି ଗୁଳି ଚଳାଇଛି । ସେ ମୋତେ ଯାହା କହିଥିଲା ଆପଣଙ୍କୁ ମଧ୍ୟ ତାହାହିଁ କହିଲା ।

ତ୍ରିଭୁବନଦୟାଳ ରଗିଯାଇ କହିଲେ – 'ନନ୍‌ସେନ୍‌ସ୍ ।' ଯଦି ଅଚଳା ଦୁଇଟି ଗୁଳି ଚଳାଇଥିଲା ତେବେ ତୃତୀୟ ଗୁଳି କ'ଣ ଅନ୍ୟ କେହି ଚଳାଇ ଥିଲା ?

"ହଁ ।"

"କଣ ହଁ ।"

"ତୃତୀୟ ଗୁଳି ଅନ୍ୟ କେହି ଚଳାଇଛି ।

ତ୍ରିଭୁବନଦୟାଳ ଆଶ୍ଚର୍ଯ୍ୟ ହୋଇ ସୁନୀଲ ମୁହଁକୁ ଚାହିଁ ରହିଲେ । ସେ ରଗିଯାଇ କହିଲେ— 'ତୁମେ ପାଗଳ ହୋଇ ଯାଇନ ତ ।'

ତ୍ରିଭୁବନଦୟାଳ, ଆପଣ ଭୁଲନ୍ତୁ ନାହିଁ ଯେ ଅଚଳା ଶଭଲଭର ଘଟଣାସ୍ଥଳରେ ପକାଇ ଦେଇ ଆସିଥିଲେ । କିନ୍ତୁ ମୁଁ ଅଳ୍ପ ସମୟ ପରେ ସେଠାରେ ପହଞ୍ଚିଲା ବେଳକୁ ରିଭଲଭର ସେଠାରେ ନ ଥିଲା ସେ ଶଭଲଭର

ଗଲା କୁଆଡେ ?

ହୁଏତ ଗଭଲଭର ସମ୍ବନ୍ଧରେ ଅଚଲା ମିଛ କହୁଥାଇପାରେ, ଅର୍ଥାତ ଗଭଲଭର ସେଠାରେ ପକାଇ ନଥିବେ । ତୁମେ ବୋଧହୁଏ ଗଭଲଭର ଲୁଚାଇ ଦେଇଥିବ । ହୁଏତ ଗଭଲଭର ଆଣିବା ଉଦ୍ଦେଶ୍ୟରେ ତୁମେ ସେଠାରେ ପହଞ୍ଚିଥିଲ ।

ସୁନୀଲ କିଛି ସମୟ ଚୁପ୍ ରହିଲା ପରେ ଅଚଲାକୁ ପଚାରିଲେ – ତୁମେ ଠିକ୍ ଜାଣିଛ ଯେ ଯେତେବେଳେ ତୁମେ ଗୁଳି ଚଳାଇଲ ସେହି ଗୁଳି ତା ଦେହରେ ବାଜିଥିଲା ଏବଂ ସେ ପଡ଼ି ମରିଯାଇଥିଲା । ଠିକଏ ଭଲଭାବେ ଚିନ୍ତା କରି କୁହ । ତୁମେ ଯେତେବେଳେ ଅଫିସ ବାହାର ଆଡକୁ ପିଠି କରିଥିଲ, ସେତେବେଳେ ତ୍ୟାଗୀ କେଉଁଠି ଥିଲା ?

ଅଫିସ ବାହାର ପଟେଡାହାଣ ଆଡକୁ ପଡ଼ିଥିବା ଟେବୁଲର ଡାହାଣପଟ କୋଣରେ । ସେ ସେତିକବେଳେ ଠିକ ଅଫିସର ଦୁଆର ମୁହଁକୁ ବାହାରିଥିଲା । ଅଚଲା କହିଲା ।

ତୁମେ ଗୁଳି ଚଳାଇଲ, ତା ପରେ ?

ସେ ଆଖି ଖୋସି ଦେଇ ଚିତ୍କାର କରି ତଳେ ପଡ଼ିଗଲା ।

ସେ କପରି ଭାବରେ ପଡ଼ିଥିଲା ?

ସେ ନିଜ ଡ଼ାହାଣ ପଟକୁ ମଡ଼ିଥିଲା । ତାର ମୁଣ୍ଡ ମୋ ଆଡକୁ ଥିଲା ଏବଂ ଗୋଡ ରୁମ୍ ଭିତର ପଟରେ ଥିଲା ।

ସୁନୀଲ ଉତ୍ତେଜିତ ହୋଇ କହିଲେ— ଆପଣ ଏ ଝିଅ କଥା ଅନୁସାରେ ଘଟଣାସ୍ଥଳ କଥା ମନେ ପକାନ୍ତୁ । କାଲିରେ ଯେଉଁ ଗୁଳିର ଚିହ୍ନ ଦେଖିଥିଲେ ତାହା ଟେବୁଲର ଡାହାଣ ପଟେ ଥିଲା । କିନ୍ତୁ ତ୍ୟାଗୀର ଶବ ଟେବୁଲର ବାମପଟେ ଥିଲା, ଚିତ ହୋଇ ପଡ଼ିଥିଲା ଏବଂ ତାର ଗୋଡ଼ ଦୁଆର ମୁହଁ ଆଡ଼କୁ ଥିଲା ।

ପ୍ରଭୁଦୟାଲ କହିଲେ— ପ୍ରଥମେ ସେ ହୁଏତ ଗୋଟିଏ ପଟକୁ ପଡ଼ି କୌଣସି ପ୍ରକାରେ ଉଠି ଅନ୍ୟ ପଟକୁ ପଡ଼ିଥିବ ।

ଅସମ୍ଭବ । ଗୁଳି ତାର ଗ୍ରଣ୍ଠରେ ବାଜିଥିଲା । ଯାଙ୍ଗେ ଯାଙ୍ଗେ ତାର ପ୍ରାଣ ଗ୍ରଣ୍ଡି ଯାଇଥିବ । ସେ ଯେଉଁଠି ପଡ଼ିଥିବ ସେଇଠି ମରିଥିବ ।

"ତୁମେ କ'ଣ କହିବାକୁ ଚାହଁ ?

ମୁଁ କହିବାକୁ ଚାହେଁ ଯେ ଯେଉଁ ଗୁଳି ଅଚଳା ଚଳାଇଥିଲା ସେଥିରୁ ଗୋଟିଏ ହେଲେ ଗୁଳି ତ୍ୟାଗୀ ଦେହରେ ବାଜି ନାହିଁ ।

"ତା ହେଲେ ତ୍ୟାଗୀ ତାଙ୍କ ଆଖି ଆଗରେ ପଡ଼ିଗଲା କପଣ ?"

"ସେ ଅଭିନୟ କରିଥିଲା । ସେ ଜାଣିଶୁଣି ଅଚଳାର ଗୁଳିରେ ମଲାପରି ଅଭିନୟ କରିଥିଲା । ଅଚଳା କାଳେ ପୁଣି ଗୁଳି ଚଳାଇଦେବ ସେଥିପାଇଁ ସେ ଭୟ କରିଥିଲା । ସେ ମରିଗଲା ଭାବି ଅଚଳା ଗୁଳି ଚଳାଇବା ବନ୍ଦ କଲେ ଏବଂ ଶଉଳଭିର ସେଠାରେ ପକାଇ ପଳାଇଲେ । ତାପରେ ଅନ୍ୟ କେହି ସେଠାରେ ପହଞ୍ଚି ସେଇ ଶଉଳଭିରରେ ତ୍ୟାଗକୁ ହତ୍ୟା କରିଛି ।

ଅଚଳା ଫୁସ୍‌ଫୁସ କରି କହିଲା— ତେବେ ମୁଁ ତ୍ୟାଗୀକୁ ହତ୍ୟା କରିନାହିଁ ?

ସୁଶୀଳ କହିଲେ ନାଁ । ଅଚଳା, ତୁମେ ଆଗରୁ କେବେ ଗୁଳି ଚଳାଇଥିଲ ।

"ନାଁ । ମୁଁ କେବେ ଶଉଳଭିର ଛୁଇଁ ନ ଥିଲି । ମୁଁ କେବଳ ଜାଣିଥିଲି ଯେ ବନ୍ଧୁକ ନଳୀକୁ ଆଗକୁ ରଖି ସୁଇଚ୍ ଟିପିଲେ ଗୁଳି ଚାଲିଯାଏ ଏବଂ ଲୋକ ମରିଯାଏ ।

ସୁଶୀଳ କହିଲେ— ଶୁଣିଲେ ପ୍ରଭୁଦୟାଳ ।

ପ୍ରଭୁଦୟାଳ ଦୀର୍ଘ ନିଶ୍ୱାସ ମାରିଲେ । ସେ କହିଲେ ତୁମ ଜୀଅର ଦାମ୍ ଅଛି ।

ସୁଶୀଳ ଦେହରେ ଜୀବନ ପଶିଲା ।

କିନ୍ତୁ ଆମକୁ ସେହି ଲୋକକୁ ଖୋଜିବାକୁ ପଡ଼ିବ, ଯେ କି ମିସ୍ ମଜୁମଦାର ଆସିବା ପରେ ଘଟଣାସ୍ଥଳରେ ପହଞ୍ଚି ତ୍ୟାଗୀକୁ ଗୁଳି

ଚଲାଇଥିଲା ।

ଅଚଳା କହିଲେ—ମୁଁ ବର୍ତ୍ତମାନ ଯାଇପାରେ କି ?

ପ୍ରଦ୍ୟୁମ୍ନଦୟାଲ କହିଲେ—ହଁ ଆପଣ ଯାଇପାରନ୍ତି । କିନ୍ତୁ କୁଆଡେ ପଳାଇ ଯିବେ ନାହିଁ । ହୁଏତ ଆମର ଆପଣଙ୍କୁ ଦରକାର ପଡ଼ିପାରେ ।

'ଠିକ୍ ଅଛି ।'

ସୁନୀଲ କହିଲେ—ଚାଲ ମୁଁ ତୁମକୁ ଛାଡ଼ି ଦେଇ ଆସିବି ।

ଅଚଳା କହିଲେ—ନାଁ, ଆପଣ କାହିଁକି କଷ୍ଟ କରିବେ । ମୁଁ ଚାଲିଯିବି । ଆପଣ ମୋ ପାଇଁ ଯାହା କରିଛନ୍ତି ଜୀବନସାରା ମୁଁ ଆପଣଙ୍କର ଋଣୀ ହୋଇ ରହିବି । ଏହାକହି ଅଚଳା ଚାଲିଗଲେ ।

ପ୍ରଦ୍ୟୁମ୍ନଦୟାଲ କିଛିସମୟ ପର୍ଯ୍ୟନ୍ତ ଚୁପ୍ ଚାପ ବସି ରହିଲେ ।

ଦୀର୍ଘଶ୍ୱାସ ନେଇ କହିଲେ – 'ଭଗବାନ୍, ପୋଲିସ ଚାକିରୀରୁ ରକ୍ଷା କରନ୍ତୁ ।

ସୁନୀଲ ସହାନୁଭୂତିପୂର୍ଣ୍ଣ ଭାବେ ତାଙ୍କ ଆଡକୁ ଅନାଇ କହିଲେ – ଆପଣଙ୍କ ପରି ବିଶ୍ୱାସୀ, କର୍ତ୍ତବ୍ୟନିଷ୍ଠ ଏବଂ ସମବେଦନାଶୀଳ ଲୋକଙ୍କପାଇଁ ପୋଲିସ ଚାକିରୀ କଷ୍ଟ । ମୋ କଥା ଅନୁସାରେ ଆପଣ ଏସବୁ ତ୍ୟାଗ କଲେ ପୋଲିସ ଚାକିରୀ ଭରି ମଜା ।

ପ୍ରଦ୍ୟୁମ୍ନଦୟାଲ କହିଲେ—ଡାକୁଙ୍କ ର ଫଟୋ ମୁଁ କେବେ ପାଇବି ?

ସୁନୀଲ କହିଲେ – ପ୍ରିଣ୍ଟ ହେବା ସାଙ୍ଗେ ସାଙ୍ଗେ ପଠାଇ ଦେବି । ପ୍ୟାରେଲାଲ୍ ନମ୍ବର ୨ର ରିଭଲଭର ଚେକିଙ୍ଗ୍ ର ଫଳାଫଳ ମୋତେ କହିବେ ତ ?

ହଁ କହିବି । ବର୍ତ୍ତମାନ ତୁମେ ଏଠାରୁ ଚାଲିଯାଅ ।

ସୁନୀଲ ଉଠୁ ଉଠୁ କହିଲେ—O.K. and Thank you for every thing.

ପୋଲିସ ହେଡକ୍ୱାଟରରୁ ବାହାରକୁ ଆସିଲେ । ଆଖପାଖରେ କୌଣସି ଟ୍ୟାକ୍ସି କିମ୍ବା ସ୍କୁଟର ଦେଖି ପାରିଲେ ନାହିଁ । ଖଣ୍ଡିଏ

ସିଗାରେଟ ଟାଣି ଗ୍ଭଲି ଗ୍ଭଲି ଛକ ଆଡକୁ ଗଲେ ।

ସେ ପୋଲିସ ହେଡକ୍ୱାଟର ପାଖରୁ କିଛି ବାଟ ଯାଇଛନ୍ତି, ଏହି ସମୟରେ ଦୁଇପଟୁ ଦୁଇଜଣ ଲୋକ କେଉଁଠୁ ଆସି ପହଂଚଲେ । ସେ କେଉଁଠୁ ଆସିଲେ ଜଣା ନାହିଁ ।

ଚୁପ୍ ଗ୍ଭପ୍ ଗ୍ଭଲ ନଚେତ୍ ଗୁଳି ମାରି ଦେବୁ – ଏକ କର୍କଶ ସ୍ୱର ସୁନୀଲଙ୍କ କାନରେ ପଡ଼ିଲା ।

ତାଙ୍କ ଦେହକୁ କୌଣସି କଠିନ ସ୍ପର୍ଶ କରୁଥିଲା ତାହା ନିଶ୍ଚୟ ରିଭଲଭରର ନଳୀ ।

'ରିଭଲଭର ଅଛି'—କେହି ଜଣେ ଧମକ ଦେଇ କହିଲା ।

ସୁନୀଲ କହିଲେ—'ହୋଇଥିବ ।' ମୁଁ କ'ଣ ମନା କରୁଛି ।

'ସଟ୍ ଅପ୍'—ବାଜେ କଥା କୁହ ନାହିଁ ।

ଭାଇମାନେ ! ନିଜର ପରିଚୟ ଦିଅ ।

ମୁହଁ ବନ୍ଦ କରି ଚୁପ୍ ଗ୍ଭପ୍ ଗ୍ଭଲ ।

ଆଜ୍ଞା ପାଳନ ବ୍ୟତୀତ ସୁନୀଲର ଆଉ କିଛି ଉପାୟ ନ ଥିଲା ।

ଅଳ୍ପ ଦୂରରେ ଗୋଟିଏ କାର ଠିଆ ହୋଇଥିଲା । ଜଣେ ଆଗକୁ ଯାଇ କାରର ପଛ ଡୋର ଖୋଲିଲା । ସୁନୀଲକୁ ପଛ ସିଟ୍‌କୁ ପେଲିଦେଲା । ଜଣେ ସୁନୀଲ ପାଖରେ ତା' ଦେହକୁ ରିଭଲଭର ଲଗାଇ ବସିଲା ଏବଂ ଅନ୍ୟ ଜଣେ ଡ୍ରାଇଭିଂ କଲା ।

କାର ଦ୍ରୁତ ଗତିରେ ଆଗେଇଲା ।

***

ପ୍ୟାରେଲାଲ କମର୍ସିଆଲଷ୍ଟ୍ରିଟରେ ଥିବା ହୋଟେଲର ଗୋଟିଏ ରୁମ୍‌ରେ ବସିଥିଲେ ।

ସେ ଷ୍ଟାଳିଶ ବର୍ଷର କୃଶକାୟ ବ୍ୟକ୍ତି ଥିଲେ ।

ଗତ ତିନି ବର୍ଷ ମଉଜ ମଜଲିସରେ ଗ୍ଭଲି ଆସୁଥିଲା । ସେ

ଆଜି ଗଣ୍ଡଗୋଳ ହୋଇଯାଇଛି । ଚନି ବର୍ଷ ହେଲା ପ୍ରତ୍ୟେକ ମାସରେ ବିଜ୍‌ନେସ୍ କାମରେ ବମ୍ବେ ଯାଉଛି ବୋଲି ନିଜ ସ୍ତ୍ରୀକୁ କହି ବାହାରକୁ ଯାଉଥିଲା ଏବଂ ନିଜର ସୁନ୍ଦରୀ ଷ୍ଟେନୋଗ୍ରାଫରକୁ ସାଙ୍ଗରେ ନେଇ ସେହି ହୋଟେଲକୁ ଆସୁଥିଲା । ତିନି ଦିନ ସେ ସେଠାରେ ରହେ ଏବଂ ବମ୍ବେରୁ ଫେରି ଆସିଲି ବୋଲି କହି ନିଜର କଳହପ୍ରିୟ; ଅସୁନ୍ଦରୀ ସ୍ତ୍ରୀର ପାଖକୁ ଆସେ । ଆଜି ପର୍ଯ୍ୟନ୍ତ ସେହିପରି ଚାଲିଥିଲା; କିନ୍ତୁ ବର୍ତ୍ତମାନ ସେହି ଫଟୋ ଯୋଗୁ ସବୁ ଗଣ୍ଡଗୋଳ ହୋଇ ଯାଇଛି ।

ସେହି ଫଟୋ ଦ୍ୱାରା ଯଦି ତାର ରାଗି ସ୍ତ୍ରୀ ଜାଣି ପାରିବ ଯେ ସେ ବମ୍ବେ ନ ଯାଇ ରାଜନଗରରେ ରହୁଥିଲା ତେବେ ବିରାଟ ସମସ୍ୟା ଉପସ୍ଥିତ ହେବ ।

ନାଁ, ନାଁ । । ଯେମିତି ହେଉ ସେହି ଫଟୋ ଛପିବା ବନ୍ଦ କରିବାକୁ ପଡ଼ିବ ।

ସେ 'ବ୍ଲାଷ୍ଟ'ର ଉଦ୍ଘାଟନୀ ଏଡ଼ିଶନ୍ ଦେଖିଥିଲା । ସେଥିରେ ତାର ଫଟୋ ଛପା ହୋଇ ନ ଥିଲା ।

ସମ୍ବାଦପତ୍ର, ପ୍ରଧାନ ସମ୍ପାଦକ ସୁନୀଲ, ଯେକି ସେହି ଫଟୋ ଉଠାଇଥିଲା ସେ ଖୁବ ଭଲ ପିଲା । ତାଙ୍କୁ ସବୁ କଥା ପରିଷ୍କାର କହି ଦେବ । ତାର ବିଶ୍ୱାସ ଥିଲା ଯେ ସୁନୀଲ ନିଶ୍ଚୟ ତାକୁ ସାହାଯ୍ୟ କରିବେ ଏବଂ ସେ ତାକୁ ସନ୍ଧ୍ୟାରେ ଆସିବାକୁ କହିଥିଲେ ।

ସେ ମନେ ମନେ ସିଦ୍ଧାନ୍ତ କରି ବାହାରକୁ ଆସିଲା ।

ତଳେ ଗୋଟିଏ ଟ୍ୟାକ୍‌ସିରେ ବସି 'ବ୍ଲାଷ୍ଟ' ଅଫିସ ଆଡକୁ ଗଲା ।

***

ନାରାୟଣ କୁମାର କମର୍ସିଆଲ ଷ୍ଟ୍ରିଟରେ ଗୋଟିଏ କୋଠାରେ ନିଜେ ଭଡ଼ା ନେଇଥିବା ରୁମ୍‌ରେ ବସି ନିଜକୁ ନିଜେ ଧିକ୍କାର କରୁଥିଲା ।

ବ୍ୟାଙ୍କରୁ ପାଞ୍ଚଲକ୍ଷ ଟଙ୍କା ନେଇ ପଳାଇବା ପରେ ସେ ପ୍ରଥମ ଥର ପାଇଁ ଚିନ୍ତା କରୁଛି, ଯଦି ଧରାପଡ଼ି ଯାଏ ତେବେ ତାକୁ କଷ୍ଟସ୍ଥ ଶାସ୍ତି ମିଳିବ ।

ଆଜି ପର୍ଯ୍ୟନ୍ତ ସେ କୁଶଳତା ସହ ଅଗେଇଥିଲା, କିନ୍ତୁ ଆଜି ସବୁ ବିଭ୍ରାଟ ହୋଇଯାଇଛି ।

ସେହି ପ୍ରେସ ଫଟୋଗ୍ରାଫର ତାକସ୍ମା ସହିତ ତାର ମଧ୍ୟ ଫଟୋ ଉଠାଇଛନ୍ତି ।

ନାରାୟଣ କୁମାର ଜଣେ ମୋଟା ସୁସ୍ଥ ସବଳ ଯୁବକ ଥିଲା । ତାର ମୁଣ୍ଡରେ ଆଧୁନିକ ଫେସନର ଲମ୍ବା ବାଳ ଥିଲା । ସେ ଫ୍ରେଞ୍ଚକଟ୍ ଦାଢି ମଧ୍ୟ ରଖିଥିଲା ଏବଂ ଆଖିରେ ଶିଙ୍ଗ ଫ୍ରେମର ଚଷମା ପିନ୍ଧିଥିଲା ।

ସେ ବ୍ୟାଙ୍କରେ ଚାକିରି କଲାବେଳେ ଦାଢି ରଖି ନଥିଲା କି ଚଷମା ପିନ୍ଧୁ ନଥିଲା । ମୁଣ୍ଡରେ ବାଳ ଖୁବ୍ ଷ୍ଟ୍ରେଟ ଥିଲା ଏବଂ ଖୁବ୍ ପତଳା ସ୍ୱାସ୍ଥ୍ୟ ଥିଲା । କାରଣ ସେ ଖୁବ୍ କମ୍ ଖାଦ୍ୟ ଖାଉଥିଲା ।

ବ୍ୟାଙ୍କରୁ ପଞ୍ଚଲକ୍ଷ ଟଙ୍କା ନେଇ ଫେରାର୍ ହେବା ପରେ ସେ ମୁଣ୍ଡରେ ବାଳ ବଢାଇଲା, ଫ୍ରେଞ୍ଚକଟ୍ ଦାଢି ରଖିଲା ଏବଂ ଚଷମା ପିନ୍ଧିଲା । ବହୁତ ଖାଦ୍ୟ ଖାଇଁ ନିଜର ଓଜନ ୨୦ କିଲୋ ବଢାଇ ଦେଲା । ତାର ଚେହେରାରୁ ଜଣାପଡୁ ନ ଥିଲା ଯେ ସେ ବ୍ୟାଙ୍କ କ୍ୟାସିଅର ନାରାୟଣ କୁମାର ।

ଆହୁରି ମଜା କଥା ଯେ ସମୁଦ୍ରରୁ ଗୋଟିଏ ଶବ ମିଳିଲା, ତା ନାରାୟଣ କୁମାର ଶବ ବୋଲି ସମସ୍ତେ କହିଲେ । ତାପରେ ପୋଲିସ ଦ୍ୱାରା ତାକୁ ଅନୁସନ୍ଧାନ କରିବା ମଧ୍ୟ ବନ୍ଦ ହୋଇଗଲା ।

ସେ ଆଲମିରା ଖୋଲି ଗୋଟିଏ ବଡ ସୁଟକେଶ ବାହାର କଲା । ସେ ଶୀଘ୍ରରେ ସୁଟକେଶ ଖୋଲିଲା । ସୁଟକେଶରେ ନୋଟ ଭର୍ତ୍ତୀ ହୋଇଥିଲା । ଗୋଟିଏ କୋଣରେ ରିଭଲଭର ଥିଲା । ସେ ସେହି ରିଭଲଭରକୁ ବାହାର କରି ନେଇ ସୁଟକେଶକୁ ତାଲାବନ୍ଦ କରି ଆଲମିରାରେ ରଖି ଦେଲା ।

ଯୋଗକୁ ତା ପାଖରେ ଦୁଇଟି ରିଭଲ୍‌ଭର୍ ଥିଲା । ଗୋଟିଏ ସୁଶୀଲଙ୍କ ଘରେ ପଡ଼ି ଯାଇଥିଲା । ସୁଶୀଲ ସ୍ୱଶ ସ୍ଥାନୀୟ । ଭଲ ହେଉଛି ଯେ ସେଠାରୁ ପଳାଇ ଆସିଛ ନଚେତ୍ ତା ହାତରୁ ପଡ଼ି ଯାଇଥିବା ରିଭଲ୍‌ଭର୍-ରେ ସୁଶୀଲ ତାକୁ ଗୁଳି ମାରଦେଇ ଥାଆନ୍ତା । ଫଟୋ ହାସଲ କରିବା ପାଇଁ ସେ ଭଲ ବାଟ ପାଇଥିଲା, କିନ୍ତୁ କାର୍ଯ୍ୟକାରୀ ହୋଇଁ ପାରିଲାନାହିଁ ।

ବର୍ତ୍ତମାନ ଦ୍ୱିତୀୟ ଥର 'ବ୍ଲାଷ୍ଟ' ଅଫିସକୁ ଯିବା ତା ପକ୍ଷେ ବିପଦ-ଜନକ । କିନ୍ତୁ ନ ଗଲେ ଫଟୋ ହାସଲ କରି ପାରିବନାହିଁ । ଯଦି ଫଟୋ ଛପାଯାଏ ତେବେ ସେ ନିଶ୍ଚୟ ଧରା ପଡ଼ିଯିବ । ପ୍ରଥମେ ତ ହରପ୍ରକାଶ ତ୍ୟାଗୀ ତାର ସମ୍ବାଦପତ୍ରରେ ଛାପିଥିଲା ଯେ ସେ ସମୁଦ୍ରରେ ବୁଡ଼ି ମରି ନ ଥିଲା, ସେ ଏହି ସହରରେ ଥିଲା ବୋଲି । ସେତେବେଳେ ଏ କଥା କେହି ଜାଣି ପାରିଲେ ନାହିଁ, କିନ୍ତୁ ଯଦି ଖବରକାଗଜରେ ତାର ଫଟୋ ଛପା ହୋଇଯାଏ, ତେବେ ସେ ଯେକୌଣସି ପ୍ରକାର ବେଶ ବଦଳାଇଲେ ମଧ୍ୟ କେହି ନା କେହି ତାକୁ ଚିହ୍ନି ପାରିବେ । ତା'ପରେ ତାର ସବୁପ୍ରକାର ସାବ-ଧାନତା ବିଫଳ ହେବ ଏବଂ ପୋଲିସ ତାଙ୍କ ପଛରେ ଲାଗିଯିବେ । ସେ ଯେଉଁଠି ଯାଇ ଲୁଚିଲେ ମଧ୍ୟ ତା ମନରେ ଭୟ ସର୍ବଦା ଥିବ କାଳେ ଧରା ପଡ଼ିଯିବ କି ?

ସେ ସେହି ସମୟକୁ ମନେ ମନେ ଧିକ୍‌କାର କଲା ଯେତେବେଳେ କି ତାଜସ୍ୱୀର ଫଟୋ ଉଠା ଯାଇଥିଲା ।

ସେ 'ବ୍ଲାଷ୍ଟ'ର ଇଭନିଂ ଏଡ଼ିଶନ ଦେଖିଥିଲା, ସେଥିରେ ତାର ଫଟୋ ଛପା ହୋଇନାହିଁ । କିନ୍ତୁ ତାପର ଦିନ କାଗଜରେ ନିଶ୍ଚୟ ଛପାଯିବ ।

ସାଙ୍ଗେ ସାଙ୍ଗେ ତାର କିଛି କରିବା ଉଚିତ୍ ।

ହରପ୍ରକାଶ ତ୍ୟାଗୀ ତ ବର୍ତ୍ତମାନ ତାର ଆଉ କିଛି କରି ପାରିବ ନାହିଁ, ଯଦି କୌଣସି ପ୍ରକାରେ ଫଟୋ ଆଣିବାର କାର୍ଯ୍ୟକାରୀ ହୁଏ ତେବେ ଶାନ୍ତିରେ ନିଶ୍ୱାସ ମାରିବ ।

ସେ ଗଭଲଭରକୁ ଚେକ୍ କରି ପକେଟରେ ରଖି ଉଲକୁ ଆସି ଟ୍ୟାକ୍ସିରେ 'ବ୍ଲାଷ୍ଟ' ଅଫିସକୁ ଗଲା ।

ସୁନୀଲଙ୍କ କ୍ୟାବିନରେ ପଶିବା ବେଲକୁ ଶୁଣିଲା ଯେ କେହି ଜଣେ ସୁନୀଲକୁ କହୁଛି ଫଟୋ ପ୍ରିଣ୍ଟ ସରିଲାଣି ଏବଂ ଠାକୁର ସୁନୀଲ ପାଖକୁ ସେ ଫଟୋ ପଠାଇବେ ।

ତେବେ ସେ ଠାକୁର ନାମକ ବ୍ୟକ୍ତି ଠାରୁ ଫଟୋ ହାସଲ କରିବ ।

ଏହି କଥା ସେ ମନରେ ଭାବିଲା ।

***

ଶାନ୍ତି ମାଲହୋତ୍ରା ଜଣେ ଢେଙ୍ଗା ଓ ସୁସ୍ଥ ସବଳ ସ୍ତ୍ରୀ ଥିଲେ । ତାଙ୍କର ମୁହଁର କେତେକାଂଶ ପୁରୁଷ ପରି ଦିଶୁଥିଲା । ତାଙ୍କର ଉପର ଓଠରେ ଗ୍ରେଟ ଗ୍ରେଟ କେଶ ଥିଲା ଯାହାକୁ ସେ ଯେତେ ଉପାଡିଲେ ମଧ୍ୟ ପୁଣି ଉଠୁଥିଲା ।

ତାଙ୍କର ସ୍ୱାମୀ ଜୀବନ ମାଲହୋତ୍ରା ଜଣେ ସୁନ୍ଦର ଚଳଚିତ୍ର ଅଭିନେତା ଥିଲେ । ତାଙ୍କର ମୁଣ୍ଡର ବାଳ ଧଳା ହୋଇ ଆସୁଥିଲା, ତଥାପି ସେ ଖୁବ୍ ସୁନ୍ଦର ଦିଶୁ ଥିଲେ । ସେ ଜଣେ ବିଖ୍ୟାତ କଳାକାର ଥିଲେ । ତାଙ୍କର ଦେଶ ବିଦେଶରେ ସୁନାମ ଥିଲା ।

ଲୋକେ ତାଙ୍କୁ ପଚାରନ୍ତି ଯେ କଳାକାର ସୁନ୍ଦରତାର ପୂଜାରୀ, ସେ ପୁଣି ଶାନ୍ତି ପରି ଅସୁନ୍ଦରୀକୁ କପରି ବିଭା ହେଲେ, ଜୀବନ ମାଲହୋତ୍ରା ଏ କଥାକୁ ହସରେ ଉଡାଇ ଦେଉଥିଲେ ।

ଶାନ୍ତିକୁ ସେ ଏଥିପାଇଁ ବିଭା ହୋଇଥିଲେ ଯେ ସେ ବିରାଟ ଧନୀର ଝିଅ ଥିଲେ । ତାଙ୍କର ବାପା ମରିଯିବା ପରେ ଶାନ୍ତି ନାମରେ ସବୁ ସମ୍ପତ୍ତି ରହି ଯାଇଥିଲେ । ଜୀବନ ମାଲହୋତ୍ରା ତାଙ୍କର ସ୍ତ୍ରୀଙ୍କର ଅଗାଧ ସମ୍ପତ୍ତି ଯୋଗୁ ଉଚକୋଟୀର କଳାକାର ହୋଇ ପାରିଥିଲେ । ଆଜି ସେ

ଯେତେ ବଡ଼ କଳାକାର ହେଲେ ମଧ୍ୟ ନିଜ ରୋଜଗାରରେ ସେ ସେତେ ଐଶ୍ୱର୍ଯ୍ୟଶାଳୀ ହୋଇ ପାରି ନ ଥିଲେ ଯେତେ କି ସେ ତାଙ୍କ ସ୍ତ୍ରୀଙ୍କର ସମ୍ପତ୍ତିରେ ହୋଇଥିଲେ ।

ଯଦି ଧନ ଥିବ ସୁନ୍ଦର ସ୍ତ୍ରୀ ସହବାସ କରିବା କଠିନ ହେବନାହିଁ । ଜୀବନ ମାଲହୋତ୍ରା ତାହାହିଁ କରୁଥିଲେ ।

ରେଖା ନାମକ ଝିଅକୁ ସେ ରଖିଥିଲେ । ତାକୁ ଗୋଟିଏ ଖୁବ୍ ସୁନ୍ଦର ଫ୍ଲାଟ ଦେଇଥିଲେ ଏବଂ ତାର ସମସ୍ତ ଖର୍ଚ୍ଚ ସେ ବହନ କରୁଥିଲେ ।

ଏହିକଥା ଶାନ୍ତି କାନରେ ପଡ଼ିଲା । ସେ ତା ସ୍ୱାମୀକୁ ପଚାରିବାରୁ ଉଭୟଙ୍କର ଖୁବ୍ କଳି ହେଲା । ଶାନ୍ତି ତାଙ୍କୁ ଧମକ ଦେଇ କହିଲା ଯଦି ରେଖା ବିଷୟରେ କିଛି ଶୁଣେ ତେବେ ସେ ତାଙ୍କୁ ଗୁଡବାଏ ଦେବେ ।

ତୁମେ ଆଜି 'ବ୍ଲାଷ୍ଟ'ର ଇଭନିଂ ଏଡ଼ିଶନ୍ ଦେଖିଛ ? ଶାନ୍ତି ପଚାରିଲା ।

"ହଁ । କାହିଁକି ?"

ହରିପ୍ରକାଶ ତ୍ୟାଗୀଙ୍କ ହତ୍ୟା ଖବର ପଢ଼ି ତୁମେ ଖୁବ ଖୁସି ହୋଇଥିବ ।

ମୁଁ କାହିଁକି ଖୁସି ହେବି ? ସେ ମଲେ କି ବଞ୍ଚିଲେ ମୋର କ'ଣ ଅଛି ?

ମୁଁ ସେମିତି କହୁନି ନା । ତୁମର ସୁନ୍ଦରୀ ରେଖା ସହିତ ପ୍ରେମ ଚାଲିଛି ବୋଲି ମୁଁ ତ୍ୟାଗୀର ପତ୍ରିକା 'ହଲଚଲ୍'ରୁ ପଢ଼ିଥିଲି ।

ଗଲା କଥା ଗଲାଣି । ବାରମ୍ବାର କାହିଁକି ସେ କଥା କହୁଛ ।

ଯଦି ଗଲାଣି ତ ଭଲ କଥା ନ ହେଲେ ତୁମର ଭାରି ଖରାପ ହେବ ।

ଜୀବନ ମାଲହୋତ୍ରା ଚୁପ ରହିଲେ । ପତ୍ନୀଙ୍କର ଧମକ କଥା ତାଙ୍କର

ମନେ ପଡ଼ୁଥିଲା । ଯଦି ଶାନ୍ତ ଗୁଡ଼ପଣ ଦଅନ୍ତି ତେବେ ସବୁ ସମ୍ପତ୍ତି ହାତଛଡ଼ା ହୋଇଯିବ । ଯଦି ସମ୍ପତ୍ତି ନ ଥାନ୍ତା ସେ ରେଖା ପାଇଁ କେଉଁଠୁ ଆଣି ଖର୍ଚ୍ଚ କରି ପାଆନ୍ତେ । ରେଖା ରହୁଥିବା ଘରଭଡ଼ା ବି ଦେଇ ପାରୁ ନ ଥାନ୍ତେ ।

ତାଙ୍କର ଭାଗ୍ୟ ଏପରି ଦଗା ଦେଲା ଯେ ଜୀବନ ଏବଂ ରେଖା ସମ୍ବନ୍ଧରେ ହରପ୍ରକାଶ ତ୍ୟାଗୀ ହିଁ ପ୍ରଥମେ ତାଙ୍କ କାଗଜରେ ଛାପିଥିଲେ । ଜୀବନ ମାଲହୋତ୍ରା ଭାବିଲେ ଏହି ଗୁପ୍ତ କଥାରେ ଶାନ୍ତଙ୍କର ଦୃଷ୍ଟି ପଡ଼ିବ ନାହିଁ । କାରଣ ତ୍ୟାଗୀ ତାଙ୍କର ନାମ ଲେଖି ନ ଥିଲେ । ସେ ତାଙ୍କର ନାମ କମର୍ସିଆଲ ଷ୍ଟୁଡ଼ିଓର ଜଣେ ବିଖ୍ୟାତ କଳାକାର ରୂପରେ ଲେଖି-ଥିଲେ । ପ୍ରଥମେ ଶାନ୍ତ ବିଶ୍ୱାସ କରିନଥିଲେ ଯେ ତାଙ୍କର ସ୍ୱାମୀ ନାମରେ ଏପରି ଲେଖା ହୋଇଛି ବୋଲି, କିନ୍ତୁ ଦ୍ୱିତୀୟ ଥର ଛାପିବାରୁ ଶାନ୍ତଙ୍କୁ କିଛି ଅଜଣା ରହିଲା ନାହିଁ ।

ସେ ନିଜ ସ୍ୱାମୀଙ୍କର ସନ୍ଧାନ ନେଲେ ।

ଜୀବନ ମାଲହୋତ୍ରା ନିଜ ଦୋଷ ସ୍ୱୀକାର କରି କହିଲେ ଆଉ କେବେ ସେପରି କରିବେ ନାହିଁ ।

କିନ୍ତୁ ଏପରି ତ ବାରମ୍ବାର ହେଉଛି । କେବଳ ଏତିକି ପ୍ରଭେଦ ଯେ ଜୀବନ ମାଲହୋତ୍ରା ପୂର୍ବ ଅପେକ୍ଷା ଖୁବ୍ ସାବଧାନତା ସହି ସେହି ଖେଳ ଖେଳିବାକୁ ଆରମ୍ଭ କରିଛନ୍ତି ।

କିନ୍ତୁ ଆଜି ସାବଧାନତା ତାଂକର ବିଫଳ ହୋଇଛି । ପ୍ରଥମେ ମନା କରିବା ସତ୍ତ୍ୱେ ରେଖା କମର୍ସିଆଲ ଷ୍ଟୁଡ଼ିଓକୁ ତାଙ୍କ ଷ୍ଟୁଡ଼ିଓକୁ ଆସିଥିଲା । ସେ କେଉଁଠି ଗୋଟିଏ କୋଟ ଦେଖିଥିଲା । ତାହା କିଣିବାକୁ ଚାହୁଁଥିଲା ଏବଂ ତାଂକ ଠାରୁ ଟଂକା ମାଗିବାକୁ ଆସିଥିଲା । ମସ୍ତ ଭୁଲ ସେ କରିଥିଲା ଯେ ତାକୁ ବାହାରେ ଅପେକ୍ଷା କରିଥିବା ଟ୍ୟାକ୍ସି ପାଖକୁ ଛାଡ଼ିବାକୁ ଆସିଥିଲା ଏବଂ ତାଙ୍କସ୍ତା ଫଟୋ ସହିତ ତାର ମଧ୍ୟ ଫଟୋ ଉଠି

ଯାଇଥିଲା ।

ବର୍ତ୍ତମାନ ସେହି ଗୋଟିକ ଫଟୋ ଛପାହେଲେ ତାହା ଗ୍ରେଫତାରର କାରଣ ହୋଇପାରେ ।

ଖାଗୀ ଠାରୁ ଦୂରେଇବା ସଙ୍ଗେ ସଙ୍ଗେ ଆଉ ଗୋଟିଏ ବିପଦ ଉପସ୍ଥିତ ହେଲା ।

ସେ ସେହି ଫଟୋଗ୍ରାଫରକୁ ଚର୍ଚ୍ଚି ଥିଲା । ବର୍ତ୍ତମାନ ଯେମିତି ହେଉ ସେ ଫଟୋ ହସ୍ତଗତ କରିବାକୁ ପଡ଼ିବ । ସେ ଚେଷ୍ଟା କରିବ ସେହି ଫଟୋରୁ ରେଖାକୁ ବାହାର କରି ଦିଆଯିବା ପାଇଁ ।

ସେ ଉଠି ଠିଆ ହେଲା ।

"ମୁଁ ଟିକିଏ ଷ୍ଟୁଡ଼ିଓରୁ ଆସୁଛି ।"

ଶାନ୍ତ ତା ଆଡ଼କୁ ଅନାଇ ସମ୍ମତି ଜଣାଇଲା ।

ଜୀବନ ମାଲହୋତ୍ରା ନିଜର କଳା ଓଭରକୋଟ ପିନ୍ଧିଲେ । ମୁଣ୍ଡରେ ଟୋପି ପିନ୍ଧିଲେ ଏବଂ ସେଠାରୁ ବାହାରକୁ ଗଲେ ।

ସେ ନିଜ କାର ବାହାର କରି ସେଥିରେ 'ବ୍ଲାଫ' ଅଫିସ ଆଡକୁ ଗଲେ ।

***

ଅର୍ଜ୍ଜୁନ ନିଜର ସ୍କୁଟର ରଖି 'ବ୍ଲାଷ୍ଟ' ଅଫିସରେ ପହଂଚିଲେ । ଲିଫ୍ଟ ଗ୍ରାଉଣ୍ଡ ଫ୍ଲୋରରେ ଥିଲା । ସେ ଶୀଘ୍ର ଲିଫ୍ଟରେ ପହଂଚିଲେ । ଲିଫ୍ଟରେ ଆଗରୁ ଆଉ ଜଣେ ଲୋକ ଥିଲେ । ସେ ଓଭରକୋଟ ଓ ଟୋପି ପିନ୍ଧି ଚଳଚିତ୍ର ଅଭିନେତା ପରି ସୁନ୍ଦର ଦେଖା ଯାଉଥିଲେ ।

ଅର୍ଜ୍ଜୁନ ପ୍ରଥମ ମହଲାର ସୁଇଚ୍ ଟିପିଲେ ।

ସେ ଅର୍ଜ୍ଜୁନକୁ ପଚାରିଲେ—ଆପଣ କ'ଣ 'ବ୍ଲାଷ୍ଟ' ଅଫିସରେ କାମ କରନ୍ତି ?

ଅର୍ଜ୍ଜୁନ କହିଲେ—'ଆଜ୍ଞା ହଁ ।'

'ମିଷ୍ଟର ସୁମାଲ କେଉଁ ମହଲାରେ ଥାଆନ୍ତି ।'

'ପ୍ରଥମ ମହଲାରେ ।'

ସେତେବେଳକୁ ଲିଫ୍‌ଟ ପ୍ରଥମ ମହଲାରେ ଆସି ଅଟକିଲା ।

ଅର୍ଜୁନ ଲିଫ୍‌ଟରୁ ବାହାରି ସିଧା ଗୋଟିଏ ଗଳି ଆଡ଼କୁ ଅଗ୍ରସର ହେଲେ । ସେ ସୁମାଲ କ୍ୟାବିନକୁ ଅନେଇଲେ । ସେ ସେଠାରେ ନଥିଲେ ।

ସେ ଗଳି ମୁଣ୍ଡରେ ପହଂଚିଲେ ।

ଡାର୍କରୁମ୍‌ରୁ ଠାକୁର ବାହାରକୁ ବାହାରୁଥିଲେ ।

ଅର୍ଜୁନ ପଚାରିଲେ—'ସୁମାଲ କେଉଁଠି କହିପାରିବେ ?'

ଠାକୁର କହିଲେ—'ପୋଲିସ ହେଡକ୍ୱାର୍ଟରକୁ ଯାଇଛନ୍ତି ।'

'ତାଙ୍କର କାମ ସରି ଗଲାଣି ?'

ବର୍ତ୍ତମାନ ନୁହେଁ । ମୁଁ ଟିକିଏ ଚା' ପିଇବାକୁ ଯାଉଛି । ଆଜି ତ ଏତେ କାମ ଯେ ବାରଟା ବେଳେ ଖାଇବା ମଧ୍ୟ ମୋର ଭାଗ୍ୟରେ ନାହିଁ । ଫେରିଲେ ତାଙ୍କ କାମ କରିବି ।

'ତୁମେ କେତେ ସମୟ ପରେ ଫେରିବ ?'

'ପନ୍ଦର କୋଡ଼ିଏ ମିନିଟ୍ ଭିତରେ ।'

'ସେତେବେଳ ପର୍ଯ୍ୟନ୍ତ ମୁଁ ଡାର୍କରୁମ୍‌ରେ କାମ କରୁଛି ।'

'ହଁ କର ।'

ଠାକୁର ଚାଲିଗଲେ ।

ଅର୍ଜୁନ ଭିତରକୁ ଗଲେ । ତାଙ୍କର ମନେ ପଡ଼ିଲା ନିର୍ମାଣୀକୁ କହିଥିଲେ ସେ ଆସି ଯାଇଥିଲେ । ସେ ଡାର୍କରୁମ୍‌ରୁ ବାହାରି ଶୀଘ୍ର ଶୀଘ୍ର ଗଳିରେ ଆଗକୁ ଗଲେ ।

କଳା ଓଭରକୋଟ ପିନ୍ଧିଥିବା ଲୋକ ରିସେପ୍‌ସନ୍‌ରେ ଠିଆ ହୋଇଥିଲେ । ରିସେପ୍‌ସନ ଖାଲି ଥିଲା । ରେଣୁ ଛୁଟି ହୋଇଯାଇ ସାରିଥିଲା ।

ଅର୍ଜୁନ ତାଙ୍କୁ ପଚାରିଲେ— ଆପଣ ସୁମାଲ ସହିତ ଦେଖା କରିବାକୁ ଚାହୁଁଥିଲେ ନା ?

ଲୋକ ଜଣକ କହିଲେ— 'ହଁ' ।

ସେ ତ ବର୍ତ୍ତମାନ ଅଫିସରେ ନାହାନ୍ତି ।

''କହି ପାରିବେ ସେ କେତେବେଳେ ଫେରିବେ ?''

ମୁଁ କହି ପାରିବି ନାହିଁ । ଆପଣଙ୍କର କ'ଣ କାମ ଥିଲା ।

ସେ କିଛି ସମୟ ଚୁପରହି କହିଲେ – ମୁଁ ତାଙ୍କ ସହିତ ଗୋଟିଏ ଫଟୋ ବିଷୟରେ କଥାବାର୍ତ୍ତା ହୋଇ ଥାଆନ୍ତି, ଯେଉଁଟା କି ସେ ଆଜି କମର୍ସିଆଲଷ୍ଟ୍ରିଟରେ ଉଠାଇ ଥିଲେ ।

''ଆଇ ସି ।''

ମୁଁ କ'ଣ ତାଙ୍କୁ ଅପେକ୍ଷା କରି ପାରେ କି ?

''ଆପଣ ତାଙ୍କୁ ଜାଣନ୍ତି ?''

''ହଁ ।''

ତାହେଲେ ଯାଇ ତାଙ୍କ କ୍ୟାବିନରେ ବସନ୍ତୁ । ଗଳିର ତୃତୀୟ କୋଠରୀଟି ତାଙ୍କର କ୍ୟାବିନ । ନଚେତ୍ ଏହି ରିସେପ୍ସନରେ ବସନ୍ତୁ ଆପଣଙ୍କ ଖୁସି ।

''ଅର୍ଜୁନ ଗୋଟିଏ କବାଟ ଖୋଲି ଅନ୍ୟ ଗଳିକୁ ଗଲେ ।''

ସେ ନିର୍ମାଣୀଙ୍କ ଅଫିସରେ ପହଞ୍ଚିଲେ ।

ସେ ନିର୍ମାଣୀଙ୍କୁ କହିଲେ – ''ମୁଁ ଶଙ୍କରବେଡ଼ରୁ ଆସିଲି ।''

''ମୁଁ ଫଟୋ ଉଠାଇ ନେଇଛି ।'' ବର୍ତ୍ତମାନ ପ୍ରିଣ୍ଟ କରିବାକୁ ଯାଉଛି । ତାପରେ ପ୍ରିଣ୍ଟ ଓ ରିପୋର୍ଟ ପଠାଇବି ।

ନିର୍ମାଣୀ କହିଲେ – 'ଠିକ୍ ଅଛି ।'

ଅର୍ଜୁନ ସେଠାରୁ ବାହାରକୁ ଆସିଲେ ।

କଳା ଓଭରକୋଟ ଓ ଟୋପି ପିନ୍ଧିଥିବା ଲୋକ ରିସେପ୍ସନରେ ବସିଥିଲେ ।

ଅର୍ଜୁନ ଡାର୍କରୁମକୁ ଗଲେ ।

ଠାକୁର ଆସିବା ପୂର୍ବରୁ ସେ ଫଟୋ ଧୋଇ ପ୍ରିଣ୍ଟ କରିସାରିଲେ । ପ୍ରିଣ୍ଟ ହାତରେ ଧରି ବାହାରକୁ ଆସିଲେ । ସେ ଡାର୍କରୁମ ଝିଞ୍ଜିର ଲଗାଇ ଗଳିରେ ଆଗକୁ ଗଲେ ।

ସେ ସୁନୀଲ କ୍ୟାବିନ ବନ୍ଦ ଦେଖି ଗଲାବେଳେ କ୍ୟାବିନର କବାଟ ଖୋଲି ଦୁଇ ଜଣ ଲୋକ ବାହାରକୁ ଆସିଲେ । ସେ ଦୁହିଁଙ୍କ ମଧ୍ୟରୁ ଜଣେ ଅର୍ଜୁନ ସହିତ ଆସି ଧକ୍କା ଦେଲା । ଅର୍ଜୁନ ପଡୁ ପଡୁ ରହିଗଲେ । ସେ ସେହି ଦୁହିଁଙ୍କ ଆଡକୁ ଅନାଇଲେ ।

ଜଣେ କହିଲା— ଆମେ ସୁନୀଲକୁ ଖୋଜୁଥିଲୁ ।

ଅର୍ଜୁନ ଦେଖିଲେ - ସେ ଦୁହେଁ ବଦମାସ ଲୋକ ବୋଲି ତାଙ୍କର ଚେହେରାରୁ ଜଣା ପଡୁଥିଲା । ଜଣଙ୍କ ପକେଟରେ ରିଭଲଭର ଥିବାର ତାଙ୍କୁ ଜଣାପଡୁଥିଲା କିନ୍ତୁ ଏଭଳି ଲୋକ ସୁନୀଲ ସହିତ କାହିଁକି ସାକ୍ଷାତ କରିବାକୁ ଚାହୁଁଛନ୍ତି ।

ଅର୍ଜୁନ ପଚାରିଲେ— ଦେଖା ହେଲେ ?

"ଦେଖା ହୋଇ ଥିଲେ ଆମେ ତୁମକୁ କାହିଁକି ପଚାରି ଥାଆନ୍ତୁ ।

ତୁମେ ଜାଣିଛ ସେ କେଉଁଠାକୁ ଯାଇଛନ୍ତି?-- ଦ୍ୱିତୀୟ ଜଣକ କହିଲା ।

ଏପରି ଲୋକ ସୁନୀଲକୁ ଦେଖା କରିବା ଆଶ୍ଚର୍ଯ୍ୟ ନୁହେଁ, କିନ୍ତୁ ଏମାନେ ସୁନୀଲକୁ ଏପରି ଭାବରେ ଖୋଜିବା ନିଶ୍ଚୟ ଆଶ୍ଚର୍ଯ୍ୟ କଥା ।

ଅର୍ଜୁନ କହିଲେ—"ସେ ପୋଲିସ ହେଡକ୍ୱାର୍ଟରକୁ ଯାଇଛନ୍ତି" ।

"ବର୍ତ୍ତମାନ ସେ ସେଠାରେ ଥିବେ ?"

"ମୁଁ ଜାଣେ ନାହିଁ ।"

ସେ ଦୁହେଁ ଆଉ କିଛି ନ କହି ଗଳିପଟେ ଆଗକୁ ଗଲେ ।

ଅର୍ଜୁନ ଫଟୋ ନେଇ ରିପୋର୍ଟରଙ୍କ ରୁମକୁ ଆସିଲେ । ତାଙ୍କ ମନରେ ସେ ଦୁଇଜଣଙ୍କ ପ୍ରତି ସନ୍ଦେହ ଜାତ ହେଉଥିଲା ।

ଗୋଟିଏ ପରେ ଗୋଟିଏ ଫଟୋ ନିଜ ଟେବୁଲ ଉପରେ ରଖିଲେ ଏବଂ ଉଠି ଠିଆ ହେଲେ । ସେ ବାହାରକୁ ଆସିଲେ ।

ସେ ଦୁଇଜଣ ଲୋକଙ୍କୁ କେଉଁଠି ଦେଖି ପାରଲେ ନାହିଁ ।

କଳା ଓଭରକୋଟ ଓ ଟୋପି ପିନ୍ଧିଥିବା ଲୋକ ମଧ୍ୟ ସେଠାରେ ନ ଥିଲା । ରେସେପ୍‌ସନ୍‌ରେ ରେଣ୍ଡ ଜାଗାରେ ଜଣେ ଚପରାଶୀ ବସିଥିଲା ।

ଅର୍ଜୁନ ତଳକୁ ଆସିଲେ । ସେ ଦେଖିଲେ ସେଇ ଦୁଇଜଣ ଲୋକ ଗୋଟିଏ କଳା କାରରେ ବସି ଗଲେ ।

କୌଣସି ଅଜ୍ଞାତ ଭାବନାରେ ପ୍ରେରିତ ହୋଇ ଅର୍ଜୁନ ନିଜ ସ୍କୁଟରରେ ସେହି କଳାକାର ପଛରେ ଗଲେ ।

ସହରର ବିଭିନ୍ନ ବାଟ ଦେଇ ସେହି କଳାକାର ଯାଇ ପୋଲିସ ହେଡକ୍ୱାଟରରେ ପହଞ୍ଚିଲା । ହେଡକ୍ୱାଟର ପ୍ରବେଶ ଦ୍ୱାରର କିଛି ଦୂର୍‌ରେ ଗାଡ଼ି ରହିଲା ।

ଅର୍ଜୁନ ହେଡକ୍ୱାଟର ସାମନାରେ ସ୍କୁଟର ରଖି ଦେଲେ ।

ସେହି ସମୟରେ ଜଣେ ସିପାହୀ ଆସି ତାଙ୍କୁ କହିଲା — ଆଜ୍ଞା ଏଠାରେ ସ୍କୁଟର ରଖନ୍ତୁ ନାହିଁ ।

ଅର୍ଜୁନ କହିଲେ — "ତା ହେଲେ କେଉଁଠି ରଖିବି ?"

ପଛ ପଟେ ପାର୍କ ଅଛି, ସେଠାକୁ ଯାଆନ୍ତୁ ।

"କିନ୍ତୁ ମୁଁ ମାତ୍ର ଏକ ମିନିଟ ପାଇଁ ପ୍ରଭୁଦୟାଲଙ୍କ ପାଖକୁ ଯିବି ।"

ଯେଉଁଠିକି ଯାଆନ୍ତୁ ନା କାହିଁକି ଏଠାରେ ଗାଡ଼ି ରଖିବାର ଅନୁମତି ନାହିଁ ।

ଅର୍ଜୁନ କହିଲେ - "ଠିକ୍‌ ଅଛି ।" ସେ ସ୍କୁଟର ଷ୍ଟାର୍ଟ କଲେ । ସେ କଳା କାର ଆଡକୁ ଅନାଇଲେ । ସେ ଦୁଇଜଣ ଲୋକ କାରରୁ ଓହ୍ଲାଇ ଆସିଥିଲେ ।

ଅର୍ଜୁନ ସ୍କୁଟର ନେଇ ପଛପଟକୁ ଚାଲିଗଲେ । ସେଠାରେ ସ୍କୁଟର ରଖି ଚାଲି ଚାଲି ଆସିଲେ ।

ସେ ହେଡକ୍ୱାଟର କୋଠାର ଅଗଣାରେ ପହଞ୍ଚିଲେ ।

ହେଡ଼କ୍ୱାଟର ଠାରୁ ଶହେ ଗଜ ଦୂର ଫୁଟ୍‌ପାଥରେ ସେହି ଦୁଇଜଣଙ୍କ ପଛେ ପଛେ ଯାଇ ଅର୍ଜୁନ ସେଠାରେ ପହଞ୍ଚିଲେ । ସେ ଦେଖିଲେ ସୁଶୀଲ ଓ ସେହି ଦୁଇଜଣ ଲୋକ କଳାକାରର ପଛ ସିଟରେ ବସିଲେ । ଅର୍ଜୁନଙ୍କୁ ଜଣାଗଲା ଯେପରି କି ସୁଶୀଲଙ୍କୁ ଜବରଦସ୍ତ କାରଭିତରକୁ ପେଲି ଦେଲେ । ତୃତୀୟ ଜଣ ଡ୍ରାଇଭିଂ ସିଟ୍‌ରେ ଯାଇ ବସିଲା ଏବଂ କାର ସେଠାରୁ ଚାଲିଗଲା ।

ଅର୍ଜୁନ ନିଜ ସ୍କୁଟର ପାଖକୁ ଦୌଡ଼ିଲେ ।

ଯେଉଁ ସିପାହୀ ତାଙ୍କ ସ୍କୁଟର ପାର୍କିଂ କରିବାକୁ ମନା କରିଥିଲା, ସେ ଅର୍ଜୁନ ଆଡ଼କୁ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲା, ଯେତେ ଯେପରି ଅର୍ଜୁନ ପାଗଳ ହୋଇ ଯାଇଛି ।

ଅର୍ଜୁନ ନିଜର ସ୍କୁଟର ବାହାର କଲେ ଏବଂ ଯେଉଁ ଆଡେ କଳା କାର ଯାଇଥିଲା ସେଇଆଡେ ଖୁବ୍ ଜୋରରେ ଚଲାଇଲେ ।

ଅଳ୍ପ ବାଟ ଯିବା ପରେ କଳାକାର ଦେଖା ଯିବାରୁ ତାଙ୍କ ଦେହରେ ଜୀବନ ପଶିଲା ।

***

ସୁଶୀଲ ଚାରିଆଡ଼କୁ ଅନାଇଲେ ।

ତାହା ମଝାମଝି ବଡ ସ୍ଥିତ ଗୋଟିଏ କଟେଜର ଗୋଟିଏ ବଡ ରୁମ୍ ଥିଲା । ରୁମର ଛାତରେ ଗୋଟିଏ ବଲବ୍ ଜଳୁଥିଲା, ଯେଉଁ ବଲ୍‌ବର ହଳଦିଆ ଆଲୁଅ ଏତେ ବଡ ରୁମ ପାଇଁ ପର୍ଯ୍ୟାପ୍ତ ନ ଥିଲା । ରୁମରେ କେତେକ ଚେୟାର ଓ ଗୋଟିଏ ଟେବୁଲ ପଡ଼ିଥିଲା । ଅନ୍ୟ ପଟେ ଗୋଟିଏ ଷ୍ଟୁଲ ଉପରେ ଟେଲିଫୋନ୍ ଥିଲା । ରୁମ୍‌ର ଅବସ୍ଥାରୁ ସେଠାରେ କେହି ରହୁଛନ୍ତି ବୋଲି ଜଣାପଡୁ ନଥିଲା ।

ଯେଉଁ ବଦମାସ ଦୁହେଁ ସୁଶୀଲଙ୍କୁ ଜବରଦସ୍ତି ସେଠାକୁ ନେଇ-ଥିଲେ ସେ ତାଙ୍କ ସାମନାରେ ଠିଆ ହୋଇଥିଲେ । ସୁଶୀଲ ତାଙ୍କୁ ସେହିକ

ହୁଥମଥର ଦେଖିଥିଲେ । ଜଣେ ନାକ ଖଣ୍ଡିଆ ଖୁବ୍ ଡ଼େଙ୍ଗା ମୋଟା ଲୋକ ଥିଲା ଏବଂ ଅନ୍ୟ ଜଣକ ପତଳା ଲୋକ ଥିଲା । ତାକୁ ସୁଶୀଲ ଚିହ୍ନି ପାରିଲେ । ତାର ନାମ ମୁରଶୀ ।

ସୁଶୀଲ କହିଲେ – ତୁମେ ମାନେ ମୋତେ କାହିଁକି ଏଠାକୁ ଆଣିଛ ?

ମୁରଶୀ କହିଲା — "ଆଜ ତୁମେ ଗୋଟିଏ ଫଟୋ ଉଠାଇଥିଲ । ସେଇଟା ଆମର ଦରକାର ।"

ଓଃ ! "ତୁମେମାନେ ମୋତେ ଚିହ୍ନିଛ ?"

"ବାଜେ କଥା କୁହନାହିଁ ।"

"ମୁଁ ତ ଆଜ କେତେ ଗୁଡ଼ିଏ ଫଟୋ ଉଠାଇଛୁ ।"

ଆମର ସେଥି ମଧ୍ୟରୁ ଗୋଟିଏ ଫଟୋ ଦରକାର । ତୁମେ ତାଜସ୍ମାର ଯେଉଁ ଫଟୋ କମର୍ସିଆଲଷ୍ଟ୍ରିଟରେ ଉଠାଇଥିଲ ।

କାହିଁକି ଦରକାର ? କ'ଣ ବାନ୍ଧି କରି ଘରେ ଟାଙ୍ଗିବ ?

"କଥା ବନ୍ଦ କର । ସେହି ଫଟୋ ନେଗେଟିଭ୍ ସହିତ ଆମର ଦରକାର ।"

"ମୁଁ କ'ଣ ସେ ଗୁଡ଼ିକ ସାଙ୍ଗରେ ଧରି ବୁଲୁଛି ?"

"ସେ ଫଟୋ କାହିଁ ?"

"ବ୍ଲାଷ୍ଟ ଅଫିସରେ ।"

"ଠିକ୍ ଅଛି । ତୁମେ ସେ ଫଟୋ ଆମକୁ ଆଣିଦେବ ।"

"କେମିତି ?"

'ସାମନାରେ ଟେଲିଫୋନ ଅଛି । ତୁମ ଅଫିସରେ ଯାହା ପାଖରେ ' ସେହି ଫଟୋ ଅଛି ତା' ପାଖକୁ ଫୋନ କରି କୁହ ଯେ ଫଟୋ ଆଣିବା ପାଇଁ ତୁମେ ଲୋକ ପଠାଉଛ । ତୁମେ ସେହି ଲୋକ ପାଖକୁ ଗୋଟିଏ ଚିଠି ଲେଖି ଦିଅ । ନିଜ ସାଙ୍ଗ ଆଡକୁ ସଙ୍କେତ ଦେଇ କହିଲା – 'କାଲୁ' ତୁମର

ଚିଠି ନେଇ ତୁମ ଅଫିସକୁ ଯିବ ଏବଂ ଫଟୋ ନେଇ ଆସିବ ।

'ମୋର ଅବସ୍ଥା କ ଣ ହେବ ?'

ତୁମର କିଛି ହେବ ନାହିଁ । ଫଟୋ ଆମର ହସ୍ତଗତ ହେବା ପର୍ଯ୍ୟନ୍ତ ତୁମେ ଏଠାରେ ବନ୍ଦୀ ହୋଇ ରହିବ । ତା ପରେ ତୁମକୁ ଛାଡ଼ ଦିଆଯିବ । ଯେତେ ଶୀଘ୍ର ଫଟୋ ଆମ ହାତକୁ ଆସିବ, ଯେତେ ଶୀଘ୍ର ତୁମକୁ ଛାଡ଼ ଦେବୁ !

'ଏହି କଟେଜ କାହାର ?'

'ଯାହାର ହେଉ ତୁମର କ ଣ ଦରକାର ?

'ତୁମର ସେହି ଫଟୋ କ'ଣ ଦରକାର ?'

'ଦରକାର ଅଛି ।'

'ତୁମେ କାହା ପାଇଁ କାମ କରୁଛ ?'

'ମାନେ ?

ଯେଉଁ ଲୋକ ତୁମକୁ ଭଡ଼ା ଦେଇ ରଖିଛି ତା'ର ସେ ଫଟୋ ଦରକାର ତୁମେ କ'ଣ ସେ ଫଟୋ ନେଇ ଆସୁର କରିବ । ସେ ଲୋକ କିଏ ?

'ବାଜେ କଥା କହନି ତୁମକୁ ଯାହା କୁହାଯାଉଛି ତାହା କର ।

ତୁମର ଏହାଦ୍ୱାରା ମଙ୍ଗଳ ହେବ ।'

'ତୁମେ ନିଜର ମଙ୍ଗଳ ଚିନ୍ତା କର । ଧରା ହେଲେ ତୁମେ କଠିନ ଶାସ୍ତି ପାଇବ । ତୁମେ ଜାଣ ନାହିଁ ଯେ ମୁଁ କିଏ ?

ମୁରାରୀ ଦାନ୍ତ କଡ଼ମଡ଼ କରି କହିଲା – କାଲୁ, ଏ ଭଲରେ ରାଜି ହେବ ନାହିଁ । ଏହାକୁ କିଛି ଶିକ୍ଷା ଦିଅ ।

ପାହାଡ଼ ପରି ଶରୀର କାଲୁ ସୁନୀଲ ଆଡ଼କୁ ଆସିଲା ।

ସୁନୀଲ ଗୋଟିଏ ଚେୟାର ଉଠାଇ ମୁରାରୀ ହାତରେ ଥିବା ରିଭଲଭରକୁ ଲକ୍ଷ୍ୟ କରି କାଲୁ ଉପରକୁ ଫୋପାଡ଼ିଲା । ଚେୟାର କାଲୁ ଦେହରେ ବାଜିଲେ ମଧ୍ୟ ସେ ନିଜ ସ୍ଥାନରୁ ଟିକିଏ ହେଲେ ହଲିଲା ନାହିଁ ।

ଡେସ୍କାରର ଗୋଟିଏ ଗୋଡ ତା ମୁଣ୍ଡରେ ବାଜ ରକ୍ତ ବାହାରିଲା ।

କାଲୁ ସୁମାଲର ବେକକୁ ଚିପି ଧରିଲା । ସୁମାଲ ଛଟପଟ ହେବାକୁ ଲଗିଲା । କାଲୁ ତାକୁ ଗୁରଟି ମୁଥ ମାର ତାକୁ ଉଠାଇ କସ୍ବୁ ଦେଲା ।

ସୁମାଲ ଏମିତଭାବେ ପଡ଼ିରହିଲା ଯେତେ ଯେପରି ବେହୋସ ହୋଇ-ଯାଇଛ । ସେ ଯଦ ଉଠିବାକୁ ଚେଷ୍ଟା କରିଥାଆନ୍ତା, ତା'ହେଲେ ସେ ଗ୍ରକ୍ଷସ ତାକୁ ଆହୁର ମାର ଥାଆନ୍ତା ।

ମୁରସି କହିଲା—'ଆରେ 'ତୁ ସ୍କାଲୁ ଜୀବନରୁ ମାର ଦେଇନୁଚ ?

କାଲୁ ମୁଣ୍ଡରୁ ରକ୍ତ ପୋଛୁ ପୋଛୁ କହିଲା – ହାରାମଜାଦା ମୋ ମୁଣ୍ଡ ଫଟେଇ ଦେଲା ।

ତୁ ତ ସବୁ ଯାଲ ଦେଲୁ । ମୁଁ କହିଥିଲି ପରା ତାକୁ ଫୁସଲେଇ କାମ ଆଦାୟ କରିବା । ସବମୋଟ ଏକ ହଜାର ଟଙ୍କା ମିଳିଛ ଏବଂ ତା' ସହିତ ତୁ ହତ୍ୟା ମଧ୍ୟ କଲୁ । କାଲୁ, ତୋ ସହିତ କାମ କଲେ ବିପଦ ।

କାଲୁ ନରମ ସ୍ୱରରେ କହିଲା— 'ସେ ମରି ନଥିବ ।

'କିନ୍ତୁ ତୁ ତ ଯାହା କଲୁ ବର୍ତ୍ତମାନ ଫୋନ କରିବାକୁ ପଡ଼ିବ ।'

ଫୋନ କରି ଦିଅ ।

କେତେ ନମ୍ବର ?

"56୨୪84"

ନମ୍ବର ଶୁଣି ସୁମାଲ ଚମକ ପଡ଼ିଲା । ଏଇଟା ତ ମଜୁମଦାରଙ୍କ ଘରର ଫୋନ ନମ୍ବର ।

ମୁରସି ଫୋନ କଲା ।

ଫୋନରେ ଯାହା କଥାବାର୍ତ୍ତା ହେଲା କେବଳ ମୁରସି କଥା ସୁମାଲ ଶୁଣି ପାରୁଥିଲା ଏବଂ ସେଥିରୁ କିଛ ଜାଣି ପାରିଲାନାହିଁ । ସେ ଏତିକ ଜାଣି-ପାରିଲା ଯେ ମଜୁମଦାରଙ୍କ ଘରେ କାହା ସହିତ ସେ କଥାବାର୍ତ୍ତା ହେଲା ।

ତା'ପରେ ରିସିଭର ରଖିବାର ଶବ୍ଦ ଶୁଣିଲା ଏବଂ ମୁରସି କହିଲା— ହୁକୁମ ହେଲା ଯେ ତୁ ବ୍ଲାଷ୍ଟ ଅଫିସକୁ ଯାଇ ସନ୍ଧାନ ନେ, କାହା ପାଖରେ

ସେହି ଫଟୋ ଅଛି ତାକୁ ହାସଲ କରିବାକୁ ଚେଷ୍ଟା କର । ମୁଁ ଏଠାରେ ଯାକୁ ଜଗି ରହିଛି ।

'ହେଉ'—କହି କାଲୁ ଗ୍ଭଲିଗଲା ।

ସୁନୀଲ ପାଞ୍ଚମିନଟ୍ ପର୍ଯ୍ୟନ୍ତ ସେମିତି ପଡ଼ିରହିଲା, ତା'ପରେ ଆଖି ଫିଟାଇଲା ।

ମୁରଗ୍ଭି ହାତରେ ରିଭଲଭର୍ ନେଇ ତା' ସାମନାରେ ଠିଆ ହୋଇଥିଲା ।

ସେ ପଗ୍ଭରିଲେ—ସେ ଗ୍ଭକ୍ଷସ ଗଲା ?

'ଭଗବାନଙ୍କ ଦୟାରୁ ବଞ୍ଚିଗଲ'—ମୁରଗ୍ଭି କହିଲା— 'କାଲୁ ଗ୍ଭରି ଗ୍ଭଗି । ସେ ତୁମ ଅଫିସକୁ ଯାଇଛି । ଦେଖିବ ସେ ଫଟୋ ନିଶ୍ଚୟ ନେଇ କରି ଆସିବ । ସେଥିପାଇଁ ଯଦି ଦରକାର ପଡେ ସେ ଜଣେ ଦୁଇଜଣଙ୍କ ଜୀବନରୁ ମାରି ଦେଇପାରେ ।

ସବୁ କାମ ତୁମେ ହଜାରେ ଝଙ୍କାରେ କରୁଛ । ହତ୍ୟାର ଫାଶି ତ ଅଧିକ ହେବା କଥା ।

'ତେବେ ତୁମେ ବେହୋସ ନ ହୋଇ ସବୁ କଥା ଶୁଣୁଥିଲ ।'

ସୁନୀଲ ଦେଖିଲା କବାଟ ଧୀରେ ଧୀରେ ଖୋଲୁଛି । ମୁରଗ୍ଭି ଦୁଆର ମୁହଁ ଆଡକୁ ପିଠି କରିଥିଲ, ତେଣୁ ସେ ଦେଖି ପାରୁ ନ ଥିଲା ଯେ କେହି ଭିତରକୁ ଆସୁଛି ।

ସୁନୀଲ କହିଲା—'ଓସ୍ତାଦ୍ ! ଏତିକ ବୁଦ୍ଧି ଯେ ତୁମେ କାହାପାଇଁ ଏ କାମ ସବୁ କରୁଛ ?'

ଚୁପ୍ ଗ୍ଭପ ବସ ନଚେତ୍...... ।

'ଖବରଦାର ରିଭଲଭର ପକାଇ ଦିଅ ନଚେତ୍ ଗୁଳି କରିଦେବ ।'

ମୁରଗ୍ଭି ହଇରାଣରେ ପଡ଼ିଗଲା ।

ସୁନୀଲ ଖୁସି ହୋଇ କହିଲା – 'ପୋଲିସ ।'

ମୁରଗୀ ଡରଯାଇ ରଭଲଭର ତଳେ ପକାଇ ଦେଲା ।

ସୁମୀଲ ତେଇଁ ପଡ଼ି ରଭଲଭର ଉଠାଇ ନେଇ କହିଲା— 'ସାବାସ ଅର୍ଜୁନ ।'

ଅର୍ଜୁନ ରୁମ ଭିତରକୁ ଗଲା ।

ମୁରଗୀ ବୁଲିପଡ଼ି ଦେଖିଲା ଯେ ପୋଲିସ ଜାଗାରେ ତାର ଏକମାତ୍ର ପୁଅ ଠିଆ ହୋଇଛି ।

ସେ ପାଟି କରି କହିଲା— ହାରାମଜାଦା ମୁଁ ତୁମକୁ କାଟି ଟୁକୁରା ଟୁକୁରା କରିଦେବି ।

ସୁମୀଲ କହିଲେ— 'ବର୍ତ୍ତମାନ ନିଜ ପିଲା କଥା ଚିନ୍ତା କର ପ୍ୟାରେଲାଲ ।'

ମୁରଗୀ ଦାନ୍ତ କଡମଡ କରି ଠିଆ ହୋଇ ରହିଲା ।

ସୁମୀଲ କହିଲେ— ପୋଲିସକୁ ଫୋନ କର ।

ଅର୍ଜୁନ ପୋଲିସ, ପାଖକୁ ଟେଲିଫୋନ କରି ସବୁ କଥା କହିଲେ ।

ସୁମୀଲ ଅର୍ଜୁନକୁ ପଚାରିଲେ – ତୁମେ ଏଠାରେ ପହଞ୍ଚିଲ କିପରି ?

ଅର୍ଜୁନ ସବୁ କଥା କହିଲା ।

ସୁମୀଲ ପ୍ରଶଂସା କରି କହିଲା – ଖୁବ୍ ସାହସୀକତା କାମ କରିଛ । ଏପରି ଭିତରକୁ ପଶି ଆସି ତାକୁ ଧମକାଇଲ, ଯଦି ସେ ରଭଲଭର ନ ପକାଇ ଥାନ୍ତା ?

ଅର୍ଜୁନ କହିଲା— ଆରେ ପକାଇ ନ ଥାନ୍ତା କେମିତି । ମୁଁ କେତେ ଗୁଡ଼ିଏ ଡ଼ିଟେକ୍‌ଟିଭ ଉପନ୍ୟାସ ପଢ଼ିଛି । ହିରୋର ଇଣ୍ଟ୍ରି ଏହିପରି ହୋଇଥାଏ । ଯଦି ସେ ପିସ୍ତଲ ହାତରେ ଧରିଥାନ୍ତା, ତା ହେଲେ ସସ୍‌ପେନ୍‌ସ କ'ଣ ହେଲା ?

'ତୁମେ କି ଣ ହିରୋ ?'

ସାଇଡ ହିରୋ ତ ହୋଇପାରେ । କିନ୍ତୁ କାମ ଦେଖାଇଲି ତ ।

ହଁ ! ଖୁବ୍ ବାହାଦୁରୀ ।

'ଖାଲି ବାହାଦୁରୀ । ପୁରସ୍କାର ନାହିଁ ।'

'କୁହ କ'ଣ କହୁଛ ।'

'ଗୁରୁଜୀ ସ୍କୁଟରରେ ପାଞ୍ଚ ଲିଟର ପେଟ୍ରୋଲ ପକାଇ ଦେବ । ଏ ହାରାମଜାଦାମାନେ ଖୁବ୍ ଦୌଡ଼ାଇଛନ୍ତି ।

ଠିକ୍ ଅଛି ।

ସେଠାରେ ସେମାନେ ପୋଲିସ ଆଗମନକୁ ଅପେକ୍ଷା କରିଥିଲେ ।

***

ରିସେପ୍ସନ୍ ସାଖରେ ଯେଉଁ ଚପରାସୀ ବସିଥିଲା ତାର ନାମ ମାନସିଂହ । ସେ ଚା ପିଉଥିଲା ଓ ଗୋଟିଏ ଡିଟେକ୍ଟିଭ ଉପନ୍ୟାସ ପଢୁଥିଲା ଏବଂ ଉପନ୍ୟାସର ହିରୋର ବାହାଦୁରୀ କାର୍ଯ୍ୟ ପଢି ଭାରି ଖୁସି ହେଉଥିଲା । ସେତେବେଳେ ହିରୋ ଶତ୍ରୁଙ୍କ ଆଡ଼୍ଡାସ୍ଥଳୀରେ ପହଞ୍ଚି ପନ୍ଦର ଜଣଙ୍କୁ ଧରାଶାୟୀ କରି ଦେଇଥିଲା । ତା ଉପରକୁ ଚାରିଆଡୁ ଗୁଳି ଚାଳନା କରାଯାଇଥିଲା, କିନ୍ତୁ ତା ଦେହରେ ଗୋଟିଏ ହେଲେ ଗୁଳି ବାଜି ନ ଥିଲା । କାରଣ ଗୁଳିରୁ ରକ୍ଷା ପାଇବାର ଗୋଟିଏ ଭଲ ଉପାୟ ତାକୁ ଜଣାଥିଲା ।

'ଶୁଣ ।'

ମାନସିଂହ ଉପନ୍ୟାସରୁ ମୁଣ୍ଡ ଉଠାଇଲା ।

ଆଗରେ ଗୋଟିଏ ଦାଢ଼ିଆ ଲୋକ ଠିଆ ହୋଇଥିଲା ।

ମାନସିଂହର ମନେ ପଡ଼ିଲା ଯେ ଏହି ଲୋକ ଜଣେ ପତଳା ଲୋକ ସହିତ ସୁନୀଲର କ୍ୟାବିନରୁ ବାହାରି ବାହାରକୁ ଯାଇଥିଲେ ଏବଂ ଅର୍ଜୁନ ତାଙ୍କର ପଛେ ପଛେ ଯାଇଥିଲେ ।

ସେ କହିଲା – ମୋତେ ସୁନୀଲ ପଠାଇଛନ୍ତି । କମର୍ସିଆଲ ଷ୍ଟ୍ରିଟରେ ଯେଉଁ ଫଟୋ ଉଠାଯାଇଥିଲା ମୁଁ ସେଇଟା ନେବାକୁ ଆସିଛି ।

'ନେଇଯାଅ, କହି ସେ ବହି ଉପରେ ନଜର ଦେଲେ ।

'ସେ ଗୁଡ଼ିକ କେଉଁଠି ମିଳିବ ?'

'କ'ଣ ?'

'ସେଇ ଫଟୋ ।'

'ସୁଶୀଲ ବାବୁ ତୁମକୁ କହି ନାହାନ୍ତି ? ମୁଁ ଜାଣେ ନାହିଁ ।'

"ନାଁ ।"

ସେ ତୁମକୁ ଏଠାକୁ ପଠାଇ ଦେଲେ; କିନ୍ତୁ କହି ନାହାନ୍ତି କାହା ପାଖରୁ ସେ ଫଟୋ ନେବାକୁ ହେବ ?

'ହଁ ।'

'ଆଶ୍ଚର୍ଯ୍ୟ ।'

'ତୁମେ ତ ଜାଣିଥିବ ।'

'ମୁଁ ଜାଣିନାହିଁ ।'

'ମୁଁ ଯାହା କହୁଛି ଶୁଣୁଛ । ନା ମୁଁ ଜାଣେନାହିଁ । ଜାଣେନାହିଁ । ଖାଲି କହୁଛ ।

'ସବୁ ଶୁଣୁଛି । ତୁମର ନାମ କଅଣ ?

'କାଲୁ । କାଲିଚରଣ ।'

'ସୁଶୀଲ ବାବୁ ତୁମକୁ କିଛି ଚିଠି ଦେଇଛନ୍ତି ?'

'କି ଚିଠି ?'

'ଯେଉଁ ଚିଠିରେ କି ସେ ଲେଖିଥିବେ ଯେ ଫଟୋ ପାଇଁ ମୁଁ ଏ ଲୋକକୁ ପଠାଉଛି ?'

'ନାଁ । ସେ କହିଛନ୍ତି ସେମିତି ଫଟୋ ମିଳିଯିବ ।'

'ସେମିତି ମିଳି ପାରିବ ନାହିଁ ।'

କାଲୁ ରାଗିଯାଇ କହିଲା— 'ଆବେ; ତୁ ଚପରାଶୀ ନା ଅଫିସର ମାଲିକ ।'

'କିନ୍ତୁ……'

'ସୁଶୀଲଙ୍କର କୌଣସି ଆସିଷ୍ଟାଣ୍ଟ ଅଛନ୍ତି ଯେ କି ଫଟୋ ପ୍ରିଣ୍ଟ କରନ୍ତି ?'

'ହଁ ଅଛନ୍ତି— ଠାକୁର ।'

'ଠାକୁର କାହାନ୍ତି ?'

'ମୁଁ ଜାଣେନାହିଁ । ଡ୍ରାଇଁରୁମରେ ଥାଇ ପାରନ୍ତି ।'

'ଡ୍ରାଇଁରୁମ୍ କେଉଁଠି ?'

'ସାମନା ଗଳି ମୁଣ୍ଡରେ ।'

କାଲୁ ଆଗକୁ ଗଲା ।

ମାନସିଂହ ଉପନ୍ୟାସ ପଢିବାରେ ଲାଗିଲା ।

ଗଳିରେ ଦୁମ୍ ଦୁମ୍ ହୋଇ ପାଦ ଶବ୍ଦ ତା' କାନରେ ବାଜିଲା । ସେ ମୁଣ୍ଡ ଉଠାଇ ଦେଖିଲା କାଲୁ ଗଳିରେ ଦୌଡ଼ି ଦୌଡ଼ି ଆସୁଥିଲା ।

ମାନସିଂହ ପଚାରିଲା – କ'ଣ ହେଲା ?

କାଲୁ ଉତ୍ତର ଦେଲା ନାହିଁ । ସେ ରିସେପ୍‌ସନ୍ ବାଟ ଦେଇ ଏକା ଧାଇଁରେ ଉପରଟା ସିଡ଼ି ଡେଇଁ ଡେଇଁ ପଳାଇଲା ।

ମାନସିଂହ ଆଶ୍ଚର୍ଯ୍ୟ ହୋଇ ସିଡ଼ି ଆଡକୁ ଅନାଇ ରହିଲା ।

ସେ ପୁଣି ଉପନ୍ୟାସ ପଢ଼ିବାକୁ ଚେଷ୍ଟା କଲା, କିନ୍ତୁ ସେଥିରେ ତା' ମନ ଲାଗିଲା ନାହିଁ ।

ସେ ମୋଟା ଲୋକ କାହିଁକି ଏପରି ଭାବେ ଦୌଡ଼ି ପଳାଇଲା । ଡ୍ରାଇଁରୁମ୍‌ରେ କ'ଣ ସେ ଭୂତ ଦେଖିଲା ନା କ'ଣ ?

ମାନସିଂହ ଉପନ୍ୟାସ ବହି ବନ୍ଦ କରିଉଠିଲା । ଗଳି ଆଡ଼କୁ ଗଲା । ଡ୍ରାଇଁରୁମ୍ ପାଖରେ ଯାଇ ପହଞ୍ଚିଲା ।

କବାଟ ଖୋଲାଥିଲା ଏବଂ ଭିତରେ ଗୋଟିଏ ନାଲିବତୀ ଜଳୁଥିଲା, ଯାହାର ଆଲୁଅରେ କିଛି ଦେଖା ଯାଉ ନଥାଏ ।

ସେ ଜୋରରେ ଡାକିଲା— "ଠାକୁର ସାହେବ ଭିତରେ ଅଛନ୍ତି ?"

ଉତ୍ତର ମିଳିଲା ନାହିଁ ।

ମାନସିଂହ ଡିଉବ୍ ଲାଇଟର ସୁଇଚ୍ ଟିପି ଦେଲେ । ରୁମ୍‌ଟି

ଆଲୋକିତ ହୋଇଗଲା । ସେ ଯାହା ଦେଖିଲା, ସେ ଚିତ୍କାର କରି ସେଠାରୁ ଦୌଡ଼ି ପଳାଇ ଆସିଲା ।

ସୁଶୀଲ ସେତେବେଳେ ଅର୍ଜୁନଙ୍କ ସହିତ ଲିଫ୍‌ଟରୁ ବାହାରକୁ ଆସୁଥିଲେ । ସେମାନେ ଏହି ଚିତ୍କାର ଶୁଣିଥିଲେ । ସେମାନେ ଦେଖିଲେ ମାନସିଂହ ଗଳିବାଟେ ତାଙ୍କ ଆଡ଼କୁ ଆସୁଛି । ସୁଶୀଲ ତା' ପାଖକୁ ଗଲେ । ସେ ମାନସିଂହକୁ ଧରି ପକାଇଲେ

ସୁଶୀଲ ପଚାରିଲେ – କ'ଣ ହୋଇଛି ମାନସିଂହ ? ବର୍ତ୍ତମାନ ତୁମେ ଚିତ୍କାର କରୁଥିଲ ?

ବହୁତ କଷ୍ଟରେ ମାନସିଂହ କହିଲା, ହିଁ···ହିଁ···ହିଁ ।

କ'ଣ ହେଲା ?

ମାନସିଂହ ଥରିଲା ସ୍ୱରରେ ଡାର୍କରୁମ୍ ଆଡ଼କୁ ଦେଖାଇ କହିଲା – ଠାକୁର ସାହେବ······ ।

ଠାକୁର ସାହେବଙ୍କର କ'ଣ ହୋଇଛି ? ସୁଶୀଲ ଆଶଙ୍କା ପ୍ରକାଶ କରି ପଚାରିଲେ ।

ତାଙ୍କ ମୁଣ୍ଡ ଦୁଇଫାଳ ହୋଇପଡ଼ିଛି । ଚାରିଆଡ଼େ ରକ୍ତ··· ।

ସୁଶୀଲ ମାନସିଂହକୁ ସେଠାରେ ଛାଡ଼ି ଡାର୍କରୁମ୍ ଆଡ଼କୁ ଦୌଡ଼ିଲେ ?

ତାଙ୍କ ପଛେ ପଛେ ଅର୍ଜୁନ ଦୌଡ଼ିଲେ ।

ଡାର୍କରୁମ୍ ଦୁଆର ମୁହଁରେ ପହଞ୍ଚି ସୁଶୀଲ ଚମକି ପଡ଼ିଲା ।

ଟେବୁଲ ଉପରେ ଠାକୁର ପଡ଼ିଥିଲେ । ତାଙ୍କର ମୁଣ୍ଡ ଦୁଇଫାଳ ହୋଇପଡ଼ିଥିଲା । ଟେବୁଲର ଡ୍ରୟର ଖୋଲା ଥିଲା ଏବଂ ଖାଲିଥିଲା । ରୁମ୍‌ରେ କେତେଗୁଡ଼ିଏ ଫଟୋ ଶୁଖିବା ପାଇଁ ଟଙ୍ଗା ହୋଇନଥିଲା କମ୍ୱା ଟ୍ରେରେ ମଧ୍ୟ କୌଣସି ଫଟୋ ପ୍ରିଣ୍ଟ ପାଇଁ ନ ଥିଲା ।

ସୁଶୀଲ ଅର୍ଜୁନକୁ କହିଲେ – ଡାକ୍ତରଙ୍କୁ ଡ଼ାକ । କିମାଣୀକୁ ଡାକ ମାଲିକଙ୍କୁ ଖବର ଦିଅ, ପୋଲିସକୁ ଫୋନ କର, କିନ୍ତୁ ପ୍ରଥମେ ଡାକ୍ତରଙ୍କୁ ଶୀଘ୍ର ଡାକ ।

ଅର୍ଜ୍ଜୁନ ଗଲ ପାଖରୁ ଫେରିଲେ ।

ସୁଶୀଲ ଚିନ୍ତା କଲା, ହୁଏତ୍ସ ସେହି ଫଟୋ ପାଇଁ ଠାକୁରର ଜୀବନ ଗଲା । ଫଟୋ ହସ୍ତଗତ କରିବା ପାଇଁ କୌଣସି ଲୋକ ଅସଫଳ ହୋଇ ଠାକୁରକୁ ହତ୍ୟା କରି ଫଟୋଗୁଡ଼ିକ ନେଇ ଯାଇଛି ।

କିନ୍ତୁ କିଏ ?

ପ୍ୟାରେଲାଲ ନମ୍ବର ଏକ ?

ପ୍ୟାରେଲାଲ ନମ୍ବର ଦୁଇ ?

କେଦାରନାଥ ?

ସେହି କାଲୁ ?

ନା ଅନ୍ୟ କେହି ?

ସେ ମନେ ପକାଇବାକୁ ଲାଗିଲେ ଯେ ଫଟୋ ଉଠାଇବା ସମୟରେ କେଉଁମାନଙ୍କ ଦୃଷ୍ଟି ପଡ଼ିଥିଲା —

କେଦାରନାଥ ଓ ଦମୟନ୍ତୀ ଯୋଶୀ ।

ମୋହନଲାଲ ଯୋଶୀ ।

ସେହି କଳାକାର ଜୀବନ ମାଲହୋତ୍ରା ଏବଂ ତାଙ୍କର କୌଣସି ମଡେଲ ।

ଟ୍ୟାକ୍ସି ସାମନାରେ ଠିଆ ହୋଇଥିବା ଅଚଳା ମଜୁମଦାର ।

ଦୁଇ ପ୍ୟାରେଲାଲଙ୍କ ବ୍ୟତୀତ ଅନ୍ୟ ଜଣକ ଉପରେ ସୁଶୀଲଙ୍କ ଦୃଷ୍ଟି ପଡ଼ିଥିଲା ।

ସେତେବେଳକୁ ଲୋକମାନେ ଗଲପାଖରେ ପହଞ୍ଚି ଗଲେ ।

ସବୁଠାରୁ ଆଗରେ ନିର୍ମାଣୀ ଓ ମାଲିକ ଥିଲେ ।

ସୁଶୀଲକୁ ବହୁତ ପ୍ରଶ୍ନ ପଚାରିଲେ ।

ଡାକ୍ତର ଆସି ସେଠାରେ ପହଞ୍ଚି ଡ୍ରାର୍ଇଂରୁମକୁ ଗଲେ । ଲୋକ-ମାନେ ବାହାରେ ଠିଆ ହୋଇଥିଲେ ।

କିଛି ସମୟ ପରେ ଡାକ୍ତର ମୁଣ୍ଡ ହଲାଇ ବାହାରକୁ ଆସିଲେ ।

ସମସ୍ତେ ପ୍ରଶ୍ନସୂଚକ ଦୃଷ୍ଟିରେ ତାଙ୍କୁ ଅନାଇ ରହିଲେ ।

ମାଲିକ ବ୍ୟସ୍ତ ହୋଇ ପଚାରିଲେ – ଡାକ୍ତର !

ଡାକ୍ତର ଧୀର ସ୍ୱରେ କହିଲେ । 'ଶେଷ ।' ମୁଣ୍ଡରେ ଖୁବ୍ ଜୋର ଆଘାତ ଲାଗିଛି । ସ୍କୁଲଆଡେ ଛିନ୍ନଛିନ୍ନ ହୋଇ ମୁଣ୍ଡ ଭିତରର ମାଂସଗୁଡାକ ପଡିଛି ।

କେହି ଜଣେ ଯାଇ ଡାର୍କରୁମ୍ ର କବାଟ ବନ୍ଦ କରିଦେଲା ।

ମାଲିକ କହିଲେ – ଏପରି କେମିତି ହେଲା ?

ସୁନୀଲ କହିଲେ—ସେ ମୋପାଇଁ କେତେକ ପ୍ରିଣ୍ଟ ତିଆରି କରୁଥିଲା, ମୋତେ ଜଣାଯାଉଛି ସେହି ପ୍ରିଣ୍ଟ ପାଇଁ ବୋଧହୁଏ ତା'ର ଜୀବନ ଯାଇଛି । ମୁଁ ନିଜେ ଯଦି ସେହି ପ୍ରିଣ୍ଟ ଗୁଡିକ ତିଆରି କରିଥାଆନ୍ତି ତେବେ ମୋର ମୁଣ୍ଡର ମଧ୍ୟ ଏହିପରି ଅବସ୍ଥା ହୋଇଥାଆନ୍ତା ।

କାରଣ କ'ଣ ?

ସୁନୀଲ ସଂକ୍ଷେପରେ ସବୁ କଥା କହିଲେ ।

ମାଲିକ କହିଲେ – ଅର୍ଥାତ୍ ସେହି ଫଟୋରେ ଯେଉଁ ଲୋକ ଥିଲେ ସେଇମାନେ ହତ୍ୟା କରିଛନ୍ତି ?

ସେହିପରି ଜଣାଯାଉଛି ।

ପଛ ପଟେ ଠିଆ ହୋଇଥିବା ମାନସିଂହ କହିଲା—'ଅଜ୍ଞା ।'

ସମସ୍ତେ ତା' ଆଡକୁ ଚାହିଁଲେ ।

ମାନସିଂହ କହିଲା—'ବର୍ତ୍ତମାନ କାଳୀଚରଣ ନାମକ ଜଣେ ମୋଟା ଲୋକ ଏଠାକୁ ଆସିଥିଲା ।' ସେ ଡାର୍କରୁମ୍ କୁ ଯାଇଥିଲା ଏବଂ ଦୌଡ଼ି ଦୌଡ଼ି ବାହାରକୁ ପଳାଇଲା । ସେ ବୋଧହୁଏ ଏ କାମ କରିଛି ।

ସୁନୀଲ କହିଲେ—ହଁ ହୋଇପାରେ ।

ଅର୍ଜୁନ କହିଲେ—ଆଉ ଜଣେ ଆପଣଙ୍କ କଥା ପଚାରି ଏଠାକୁ ଆସିଥିଲା । ସେ ମଧ୍ୟ କୌଣସି ଫଟୋ ବିଷୟରେ ଆପଣଙ୍କ ସହିତ କଥା-ବାର୍ତ୍ତା ହେବାକୁ ଚାହୁଁଥିଲା । ସେ କଳାରଙ୍ଗର ଓଭରକୋଟ ଓ ଟୋପି

ପିନ୍ଧି ଥିଲା । ଚଳଚ୍ଚିତ୍ର ଅଭିନେତା ପରି ତା’ର ବେଶ୍ଭୂଷା ।

ସୁନୀଲ କହିଲେ – ସେ ନିଶ୍ଚୟ ଜୀବନ ମାଲହୋତ୍ରା ହୋଇଥିବ । ଫଟୋ ଉଠାଇବାବେଳେ ମୁଁ ମଧ୍ୟ ତାଙ୍କୁ ଏଇ ପୋଷାକ ପିନ୍ଧି ଥିବାର ଦେଖିଥିଲି ।

ଅର୍ଜୁନ କହିଲା – କିଛି ସମୟ ପର୍ଯ୍ୟନ୍ତ ରିସେପ୍‌ସନରେ ବସି ଥିଲା ଏବଂ କୁଆଡ଼େ ଗଲା ଜଣାନାହିଁ ।

ମାଲିକ ଉଚ୍ଚସ୍ୱରରେ କହିଲେ—କେହି ଅନ୍ୟ କୌଣସି ଲୋକଙ୍କୁ ଏ ଘରରେ ଦେଖିଛ କି ?

ଜଣେ ପ୍ୟାରେଲାଲ ନମ୍ବର ଏକ୍‌ର ଆକୃତି ବର୍ଣ୍ଣନା କଲା ।

ତା ପରେ ସମସ୍ତେ ନୀରବ ।

ସୁନୀଲ ଜାଣି ପାରିଲେ ନାହିଁ ଯେ ତା’ର ଅନୁପସ୍ଥିତିରେ କେଦାରନାଥ ସେଠାକୁ ଆସିଥିଲେ କି ନାହିଁ, ପ୍ୟାରେଲାଲ ନମ୍ବର ଦୁଇ ସେଠାକୁ ଫେରିଥିଲା କି ନାହିଁ ।

ହିମାଦ୍ରୀ କହିଲେ—ଯଦି ଆମପାଖରେ ସେହି ଫଟୋର ଗୋଟିଏ ପ୍ରିଣ୍ଟ ଥାଆନ୍ତା, ତା’ହେଲେ ଜଣାପଡ଼ନ୍ତା ଯେ ସେଥିରେ କ’ଣ ଏପରି ବିଶେଷତ୍ୱ ଅଛି ଯଦ୍ୱାରା କି ଗୋଟିଏ ହତ୍ୟା ହେଲା ।

ସୁନୀଲ କହିଲେ – ମୁଁ ଯଦି ସେ ଫଟୋ ଉଠାଇ ନଥାନ୍ତି କିମ୍ବା ସେ ଫଟୋ ବିଷୟରେ ଜିଦ୍ କରି ଗୁପ୍ତ ନରଖି ଥାଆନ୍ତି, ତା’ହେଲେ ଠାକୁର ଉପରେ ଆକ୍ରମଣ ହୋଇ ନଥାନ୍ତା ।

ମାଲିକ କହିଲେ—ତୁମେ ଯାହା କରିଛ ଠିକ୍ କରିଛ । ଯାହା-ହେଉପଛେ ମୁଁ ମୋର କର୍ମଚାରୀର ହତ୍ୟାକାରୀକୁ ଛାଡ଼ିବି ନାହିଁ ।

ସେତେବେଳକୁ ପୋଲିସ ସେଠାରେ ପହଞ୍ଚିଲେ ।

✻✻✻

ହଟେଲ ତ୍ରୈଲୋକ୍ୟସ୍ଥିତ ସ୍ୱପ୍ନା ରେଷ୍ଟୁରାଣ୍ଟ ଗୋଟିଏ ଚଉମହଲା କୋଠାର ଗ୍ରାଉଣ୍ଡ ଫ୍ଲୋରରେ ଥିଲା । ସୁନୀଲ ଯେତେବେଳେ ସେଠାରେ

ପହଞ୍ଚିଲେ ସେଠାରେ ବହୁତ ଭିଡ଼ଥିଲା, କୋବ୍ରା ଡ୍ୟାନ୍‌ସ ସେତେବେଳକୁ ଆରମ୍ଭ ହୋଇ ନ ଥିଲା ।

ସେ ଗୋଟିଏ କୋଣରେ ପଡ଼ିଥିବା ଟେବୁଲ ପାଖରେ ବସିଲେ ।

ଜଣେ ବୟ ତାଙ୍କ ପାଖରେ ପହଞ୍ଚିଲା ।

ସୁନୀଲ କହିଲେ—'ଦୁଇ ପ୍ୟାକ୍ ଜାନିଓ୍ବାକର ବ୍ଲାକ ଲେବେଲ୍ ।' ଆଜି ଦରକାର । ଆସନ୍ତା ସପ୍ତାହରେ ନୁହେଁ ।

ବୟ କହିଲା - 'ସାର୍, ଡବଲ୍ ।'

ସୁନୀଲ କହିଲେ— ତୁମେ କ'ଣ କାଲ । ଶୁଣି ପାରୁନାହଁ । ମୁଁ କହିଲି ଦୁଇ ପ୍ୟାକ । ଡବଲ୍ ନୁହେଁ ।

ବୟ କହିଲା – Yes Sir.

'ଶୁଣ ।'

ବୟ ଅଟକି ଗଲା ।

ମୋର ନାମ ସୁନୀଲ । ସୁନୀଲ କୁମାର୍ ଚକ୍ରବର୍ତ୍ତୀ । ନାଆଁ ମନେ ରହିବ ତ ?

'Yes Sir.'

'ମୋର ନାମ କଅଣ ?'

'ମିଷ୍ଟର ସୁନୀଲ କୁମାର ଚକ୍ରବର୍ତ୍ତୀ ।'

ଗୁଡ୍ । ତୁମେ ଯାଇ ଫ୍ଲୋରେନ୍‌ସ ମେମ୍‌ସାହେବଙ୍କୁ କୁହ ଯେ ସୁନୀଲ କୁମାର ଚକ୍ରବର୍ତ୍ତୀ ଡାକୁଛନ୍ତି ।

'Yes Sir.'

ବୟ ଚାଲିଗଲା ।

ସୁନୀଲ ଖଣ୍ଡେ ସିଗାରେଟ ଲଗାଇଲେ । ସେ ଭଲ ମୁଡ୍‌ରେ ନ ଥିଲେ । ତାଙ୍କର ଦୃଷ୍ଟି ଚାରିଆଡେ ଘୂରି ବୁଲୁଥିଲା । ପାଖ ଟେବୁଲ ଉପରେ ତାଙ୍କର ଦୃଷ୍ଟି ଅଟକି ଗଲା ।

 ସେଠାରେ ଗୋଟିଏ ଝିଅ ବସିଥିଲା, ଯାହାକୁ କି ସେ କମର୍ସିଅଲ-

ଷ୍କ୍ରିଟରେ ଜୀବନ ମାଲହୋତ୍ରାଙ୍କ ସଙ୍ଗ ଦେଖିଥିଲେ ।

ସେହି ସମୟରେ ବୟ ଡ୍ରିଂକ୍ ଆଣି ପହଞ୍ଚିଲା । ତା ପଛେ ପଛେ ଫ୍ଲୋରେନ୍ସ ଆସିଥିଲା ।

ଫ୍ଲୋରେନ୍ସ ସପନାର ଜଣେ ଭଲ କୋବ୍ରା ଡ୍ୟାନ୍ସର ଥିଲା ।

ସେ ସୁମୀଲ ସାମନାରେ ବସିପଡ଼ିକହିଲା – 'ହାଲୋ ହ୍ୟାଣ୍ଡସମ୍ ।'

ସୁମୀଲ କହିଲେ – 'ହାଲୋ, ।' ସେ ଗୋଟିଏ ଗ୍ଲାସ ଫ୍ଲୋରେନ୍ସକୁ ବଢ଼ାଇ ଦେଇ ଦେଇ କହିଲେ— ଜାମଓ୍ବାକର ବ୍ଲାକ୍ ଲେବଲ୍ । ତୁମର ପସନ୍ଦ ଯୋଗ୍ୟ ହୁଇସ୍କି । ମୁଁ ଅଗରୁ ମଗାଇ ଥିଲି ।

'ଥାଙ୍କ୍ୟୁ' । ସେ କହିଲା— ୟୁ ଆର୍ ସୋ କନ୍ସିଡରେଟ ।

ସୁମୀଲ କହିଲେ – 'ଚିୟର୍ସ ।'

ଫ୍ଲୋରେନ୍ସ କହିଲା— 'ଚିୟର୍ସ ।' ସେ ଗ୍ଲାସ ଉଠାଇ ମୁହଁରେ ଲଗାଇଲା । ତାର ଅନ୍ୟ ହାତଟି ସୁମୀଲଙ୍କର ଜଙ୍ଘ ଉପରେ ଥିଲା ।

ଫ୍ଲୋରେନ୍ସ କହିଲା – ଆଜି କେମିତି ମୋ କଥା ମନେ ପଡ଼ିଲା ?

ସୁମୀଲ କହିଲେ— 'ଫ୍ଲୋରେନ୍ସ' । ମୁଁ ତୁମର ଚନ୍ଦ୍ରାର ବାଧା ଦେବାକୁ ଚାହୁଁନାହିଁ, କିନ୍ତୁ ମୋର ତୁମ କଥା ନୁହେଁ ତୁମ ମାଲିକ କଥା ମନେ ପଡ଼ିଲା ।

ଫ୍ଲୋରେନ୍ସ କହିଲା – 'ଓଃ' । ସେ ସୁମୀଲ ଜଙ୍ଘ ଉପରୁ ହାତ ଉଠାଇ ନେଲା ।

ମୁଁ ସୋହନଲାଲ ଜୋଶୀଙ୍କ ସହିତ କଥାବାର୍ତ୍ତା ହେବାକୁ ଚାହୁଁଛି । ସୁମୀଲ କହିଲେ – ମୁଁ ଯଦି ବର୍ତ୍ତମାନ ଅନ୍ୟ କାହାକୁ ପଚାରି ଆଆନ୍ତି, କେହି କହି ନ ଥାନ୍ତେ ଯେ ସେ ଏଠାରେ ଅଛନ୍ତି ବୋଲି । କିନ୍ତୁ ମୁଁ ଜାଣେ ଯେ ସେ ଏହି କୋଠାରେ ବର୍ତ୍ତମାନ କୌଣସି କୁଆଘର ଭିତରେ ଥିବେ । ତୁମ ବ୍ୟତୀତ ମୁଁ ଏଠାରେ ଅନ୍ୟ କାହାରିକୁ ଚିହ୍ନେ ନାହିଁ । ତେଣୁ ତୁମେ ତାଙ୍କୁ ଖବର ଦେଇଦିଅ ଯେ ମୁଁ ତାଙ୍କ ସହିତ ବର୍ତ୍ତମାନ ଗୋଟିଏ ଜରୁରୀ କଥାବାର୍ତ୍ତା କରିବାକୁ ଚାହୁଁଛି ।

'ସେ ବର୍ତ୍ତମାନ ତୁମ ସହିତ କଥାବାର୍ତ୍ତା ହେବାକୁ ରାଜି ହେବେ ନାହିଁ ।'

ତାଙ୍କୁ ଏକଥା ମଧ୍ୟ କହିଦେବ ଯଦି ମୋ ସାଙ୍ଗରେ ବର୍ତ୍ତମାନ ଦେଖା ନ କରିବେ, ତା ହେଲେ ଦଶ ମିନିଟ ପରେ ପୋଲିସ ସହିତ ସେ କଥାବାର୍ତ୍ତା କରିବେ । ମୁଁ ତାଙ୍କର ଜୁଆଘର ଘେରାଉ କରିଦେବି । ସେ ଯେତେ ପୋଲିସଙ୍କୁ ହାତରେ ରଖିଲେ ମଧ୍ୟ ଯଦି 'ବ୍ଲାଷ୍ଟ' କହିବ ଯେ ଏଠାରେ ଜୁଆଖେଳ ହେଉଛି, ତେବେ କେହି ମନା କରି ପାରିବେନାହିଁ ଯେ ଏଠାରେ ଜୁଆ ଖେଳ ହେଉନାହିଁ ବୋଲି ।

'ତୁମେ ଧମକାଉଛ ?'

'ହଁ ।'

କଥା କ'ଣ ? ତୁମେ ତ ଏପରି ଢଗି କରି କହୁଛ ଯେମିତି କାହାକୁ ହତ୍ୟା କରିବାକୁ ପ୍ରତିଜ୍ଞା କରିଛ ।

'ମୋ ମୁଣ୍ଡ, ତୁମେ ଠିକ୍ ବୁଝି ପାରିଛ ।'

ତୁମ ପ୍ୟାଣ୍ଟର ବେଲ୍ଟରେ କ'ଣ ଅଛି ? ରିଭଲଭର ?

'ହଁ ।'

'ଜୀସସ୍ । କୋଣୀକୁ ହତ୍ୟା କରିବ ନାହିଁତ ?

'ହଁ, ହୋଇପାରେ ।'

ଫ୍ଲୋରେନ୍ସ ଜିନର ଗ୍ଲାସ ଖାଲି କରି ଉଠି ଠିଆ ହେଲା ।

ସେ କହିଲା — 'ମୁଁ ସାଙ୍ଗେ ସାଙ୍ଗେ ଆସୁଛି ।'

ସୁନୀଲ୍ ସମ୍ମତି ପ୍ରକାଶ କଲେ ।

ଫ୍ଲୋରେନ୍ସ ସେଠାରୁ ଚାଲିଗଲା ।

ସୁନୀଲ ହୁଇସ୍କି ସହ ସିଗାରେଟ ଧୂଆଁ ଧୀରେ ଧୀରେ ଛାଡ଼ୁଥାଆନ୍ତି ।

ବୟ ତାଙ୍କ ପାଖକୁ ଆସିବାରୁ ସେ ବିଲ ପେମେଣ୍ଟ କଲେ ।

ପ୍ରାୟ ପାଞ୍ଚ ମିନିଟ ପରେ ଫ୍ଲୋରେନସ ଫେରି ଆସିଲା ।

ସେ କହିଲା — 'ଚାଲ ।'

ସୁଶୀଲ ଉଠି ଠିଆ ହେଲା । ଯିବା ପୂର୍ବରୁ ସେ ଘରଆଡ଼କୁ ଅନାଇଲା । ପାଖ ଟେବୁଲଟାରେ ଏକୁଟିଆ ବସିଥିବା ଝିଅକୁ ଦେଖାଇଲେ ।

ଫ୍ଲୋରେନ୍‌ସକୁ ସୁଶୀଲ ପଚାରିଲେ - ତୁମେ ଏ ଝିଅକୁ ଜାଣିଛ ? ଫ୍ଲୋରେନ୍‌ସ କହିଲା - 'ଏହାର ନାମ ରେଖା । ସେ ମଡେଲିଙ୍ଗ୍ କରେ ।'

ଏଠାକୁ ବେଳେ ବେଳେ ଆସେ ?

'ଏକୁଟିଆ ?'

'ଏକୁଟିଆ ଆସେ, କିନ୍ତୁ ପରେ ଅନ୍ୟ କେହି ମଧ୍ୟ ଆସନ୍ତି ।

'କିଏ ?'

ତୁମେ ଜୀବନ ମାଲହୋତ୍ରାକୁ ଜାଣିଛ ?

'ହଁ । ସେ ଆସନ୍ତି ?

'ହଁ ।'

'ସ୍ତ୍ରୀ ସହିତ ତାଙ୍କର ସମ୍ବନ୍ଧ କ'ଣ ?'

ଫ୍ଲୋରେନ୍‌ସ ହସି ହସି କହିଲା— 'ଏଇଟା କ'ଣ କହିବା କଥା ।'

'ଜୀବନ ମାଲହୋତ୍ରା ଆଜି ଆସି ନାହାନ୍ତି ?

'ଆସିଥିଲେ । ପ୍ରାୟ ସାଢେ ଆଠଟାରେ ଆସିଥିଲେ । କିନ୍ତୁ ପାଞ୍ଚ ମିନିଟ ଭିତରେ ଚାଲି ଯାଇଥିଲେ । ଦ୍ୱିତୀୟଥର ଆସିପାରନ୍ତି ।'

ସୁଶୀଲ ତା ସହିତ ଗଲେ ।

ସେ ତାଙ୍କୁ କୋଠାର ପଛ ପଟକୁ ନେଇଗଲା । ସେଠାରେ ଗୋଟିଏ ଲିଫ୍‌ଟ ଥିଲା । ଫ୍ଲୋରେନ୍‌ସ ସୁଇଚ ଟିପିବାରୁ ଲିଫ୍‌ଟର କବାଟ ଖୋଲିଗଲା ।

ତୃତୀୟ ମହଲାକୁ ଯାଅ ।' ଫ୍ଲୋରେନ୍ସ କହିଲା—'ସେ ଲିଫ୍ଟ ସାମନାରେ ତୁମକୁ ଅପେକ୍ଷା କରିଥିବେ ।'

ସୁନୀଲ କହିଲେ—ଥ୍ୟାଙ୍କ୍ୟୁ ।

ଫ୍ଲୋରେନ୍ସ ହସିଲା । ସେ କହିଲା – ଆସିବ୍ ।

'ନଷ୍ଟସ୍ତ ।'

ତୃତୀୟ ମହଲାର ସୁଇଚ୍ ଟିପିଲେ । ଲିଫ୍ଟର କବାଟ ବନ୍ଦ ହୋଇଗଲା ଏବଂ ଉପରକୁ ଉଠିଲା ।

ତୃତୀୟ ମହଲାରେ ଲିଫ୍ଟ ଅଟକି ଗଲା । କବାଟ ଖୋଲିଲେ ।

ସାମନାରେ ସୋହନଲାଲ କୋଶୀ ଗମ୍ଭୀର ଭାବେ ଠିଆ ହୋଇଥିଲେ ।

ସେ କହିଲେ—'ଆସ ।'

ସୁନୀଲ ତାଙ୍କ ସହିତ ଗଲେ । କୋଶୀ ତାଙ୍କୁ ଗୋଟିଏ ଗ୍ରେଟ ଅଫିସକୁ ନେଇ ଆସିଲେ । ଅଫିସର କାନ୍ଥରେ ଗୋଟିଏ କାଚ ଝରକା ଥିଲା । ସେଇବାଟେ ବାହାରର ଏକ ବଡ଼ ହଲ ଦେଖା ଯାଉଥିଲା । ହଲରେ କେତେକ ଟେବୁଲ ପଡ଼ିଥିଲା ଏବଂ ସେଠାରେ ଜୁଆ ଖେଳ ଚାଲିଥିଲା ।

ସେ କହିଲେ—'ସୁନୀଲ ବସ ।'

ସୁନୀଲ ଗୋଟିଏ ଚେୟାରରେ ବସିଲେ ।

ଟେବୁଲର ଅନ୍ୟପଟେ ବୁଲିଯାଇ କୋଶୀ ଅନ୍ୟ ଗୋଟିଏ ଚେୟାରି ଆଣି ବସିଲେ । ସେ ସୁନୀଲ ଆଡକୁ ବୁଲି ବୁଲି ଚାହୁଁଥିଲେ ।

ସୁନୀଲ ସେଥି ପ୍ରତି ଦୃଷ୍ଟିପାତ କଲେ ନାହିଁ ।

କୋଶୀ କହିଲେ—କ'ଣ ବୃତ୍ତାନ୍ତ ?

ସୁନୀଲ ପଚାରିଲେ—ଆଜ ତୁମେ 'ବ୍ଲାଷ୍ଟ' ଅଫିସକୁ ଯାଇଥିଲ କି ?

କାହିଁକି ପଚାରୁଛନ୍ତି ?

ତୁମେ ଆମର ଫଟୋଗ୍ରାଫର ଠାକୁରଙ୍କୁ ଜାଣ ?

ଜାଣେ ? କାହିଁକି ?

ତାଙ୍କୁ ହତ୍ୟା କରାଯାଇଛି । କେହି ଜଣେ 'ବ୍ଲାଷ୍ଟ'ର ଡାର୍କରୁମ ଭିତରକୁ ଯାଇ ତାଙ୍କର ମୁଣ୍ଡ ଫଟାଇ ଦେଇଛି ।

ମୋତେ କାହିଁକି କହୁଛନ୍ତି ? ଠାକୁର କ'ଣ ମୋର ବନ୍ଧୁବାନ୍ଧବ ?

ସେ ଡାର୍କରୁମ୍‌ରେ ମୋପାଇଁ କେତେଗୁଡ଼ିଏ ଫଟୋ ପ୍ରସ୍ତୁତ କରୁଥିଲେ । ସେଥିରେ ଆଜ ଯେଉଁ ଫଟୋ କମର୍ସିଆଲଷ୍ଟ୍ରିଟ୍‌ରେ ଉଠାଇଥିଲି ସେଇଟା ମଧ୍ୟ ଥିଲା । ତୁମର ବୋଧହୁଏ ସେ ଫଟୋ କଥା ମନେଥିବ । ସେହି ସମୟରେ କେଦାରନାଥ ଓ ତୁମର ସ୍ତ୍ରୀ ଶ୍ରୀନିବାସ ହାଉସରୁ ବାହାରୁଥିଲେ ଏବଂ ତୁମେ ରୋଡ଼ ସେପଟେ ଗୋଟିଏ ଚୋଠାର ଦୁଆର ମୁହଁରେ ଠିଆ ହୋଇ ସେମାନଙ୍କୁ ଦେଖୁଥିଲ ।

ତା'ପରେ ?

'ସେ ଫଟୋ ପାଇଁ ଅନେକଙ୍କର ଇଚ୍ଛା ଥିଲା । ମୁଁ ଭାବିଲି ତୁମର ମଧ୍ୟ ଥାଇପାରେ ।'

ମୋର କାହିଁକି ?

କାଲେ ପୋଲିସ ଜାଣିବାକୁ ଚାହିଁବ ଯେ ତୁମେ ସେଠାରେ କ'ଣ କରୁଥିଲ । ସେ ସମୟରେ ଶ୍ରୀନିବାସ ହାଉସରେ ଖାଗୀର ହତ୍ୟା ହୋଇଥିଲା । ପୋଲିସ ତୁମକୁ ପଚାରି ପାରନ୍ତି ତୁମେ ସେ କୋଠା ଭିତରକୁ କାହାକୁ ଯିବାର ଦେଖିଥିଲକି କିମ୍ବା କେହି ବାହାରକୁ ଆସିବାର ଦେଖିଥିଲ କି ନାହିଁ ।

'ତୁମେ କ'ଣ ପୋଲିସକୁ କହିବ ଯେ ମୁଁ ଖାଗୀ ହତ୍ୟା ସମୟରେ ଶ୍ରୀନିବାସ ହାଉସର ପ୍ରବେଶ ଦ୍ୱାରରେ ନଜର ରଖିଥିଲି ।'

'ଏକଥା ମୁଁ ପୋଲିସକୁ ବହୁତ ଆଗରୁ କହିସାରିଛି ।' ମୁଁ ଅନେକ ସାକ୍ଷୀ ଦେଇପାରେ ଯେ ମୁଁ ସେମାନଙ୍କ ସହିତ କମର୍ସିଆଲ ଷ୍ଟ୍ରିଟଠାରୁ ଦୂରରେ ଥିଲି ।

ଫଟୋ ଯିଏ ନ ଦେଖିବ ତୁମର ଏ ସାକ୍ଷୀର କଥା ଠିକ୍ ହୋଇ ପାରେ । କିନ୍ତୁ ଯିଏ ଫଟୋ ଦେଖିବ ସେ ନିଶ୍ଚୟ ଜାଣି ପାରିବ ଯେ ତୁମେ ସେତେବେଳେ କେଉଁଠି ଥିଲ । ସେଥିପାଇଁ ମୁଁ ଭାବୁଛି ଫଟୋ ହାସଲ କରିବା ପାଇଁ ତୁମେ ମଧ୍ୟ ସ୍ୱୟଂ ଥିଲ ନୁହଁକି ।

'ମୁଁ ତ ଫଟୋର ଅସ୍ତିତ୍ୱ ଜାଣେ ନାହିଁ ।'

ତୁମେ ମିଛ କହୁଛ ।

ଜୋଶୀଙ୍କ ଚେହେରା ରାଗରେ ଲାଲ ହୋଇଗଲା ।

ସୁନୀଲ ତାଙ୍କ କ୍ରୋଧ ପ୍ରତି ଭ୍ରୂକ୍ଷେପ ନ କରି ଭାଲୁ ଓ ମୁରାରୀଙ୍କ ବିଷୟରେ କହିଲେ ଏବଂ ଆହୁରି ମଧ୍ୟ କହିଲେ ଯେ ମରିନାବିଚ୍‌ରେ ଥିବା କଟେଜରୁ ମୁରାରୀ ମଜୁମଦାରଙ୍କ ଘରକୁ ଫୋନ କରିଥିଲା । ମୁଁ ଜାଣେ ମଜୁମଦାର ନିଜ କାମ ପାଇଁ ତୁମର ସାହାଯ୍ୟ ନେଇଥିଲେ । ପରେ ତାଙ୍କ କାରଖାନାରେ ହରତାଳ ହୋଇଥିଲା, ତାହା ଭାଙ୍ଗିବା ପାଇଁ ତୁମ ଠାରୁ ଭଡାରେ ଗୁଣ୍ଡା ତୁମ ମାଧ୍ୟମରେ ନେଇଥିଲେ । କୁହ ମୁଁ କ'ଣ ଭୁଲ କହୁଛି ।

ଜୋଶୀ ନୀରବ ରହିଲେ ।

ଆଜି ମଧ୍ୟ ତ୍ୟାଗୀର ଅଫିସରୁ ବାହାରି ସାମନାରେ ଥିବା ହୋଟେଲରୁ ତୁମେ ମଜୁମଦାରଙ୍କ ଘରକୁ ଫୋନ କରି କହିଥିଲ ଯେ ଜଣାପଡୁଛି ତ୍ୟାଗୀକୁ କୌଣସି ଝିଅ ହତ୍ୟା କରୁଛି । ମୋର ଧାରଣା ଯେ ମଜୁମଦାରଙ୍କ କଥା ଅନୁସାରେ ତୁମେ ଫଟୋ ହାସଲ କରିବା ପାଇଁ ଭାଲୁ ଓ ମୁରାରୀଙ୍କୁ ମୋ ପଛରେ ଲଗେଇଛ । ସେହି ଫଟୋ ମଧ୍ୟ ହତ୍ୟା ସମୟରେ ତାଙ୍କ ଝିଅ କମର୍ସିଆଲଷ୍ଟ୍ରିଟରେ ଥିଲା ବୋଲି ପ୍ରମାଣ କରିପାରେ ।'

ତୁମେ ଏଠାକୁ କାହିଁକି ଆସିଛ ?

ମୁ ତୁମକୁ ଜଣାଇ ଦେବାକୁ ଆସିଛି ଯେ ଯେଉଁ ଲୋକ ଠାକୁରଙ୍କୁ ହତ୍ୟା କରିଛି ମୁଁ ତାକୁ ଛାଡ଼ିବି ନାହିଁ । ଏକ ଉର୍ଜନ ତ୍ୟାଗୀ ମଲେ ମୋର

କିଛି ନାହିଁ କିନ୍ତୁ ଠାକୁର ମୁଖରେ ମୋର ମତଲବ ଅଛି । ତୁମର ଚେଲା ମୁରଲୀ ବର୍ତ୍ତମାନ ପୋଲିସ କବଳରେ ଅଛି ଏବଂ

'ସେ ମୋର ଚେଲା ନୁହେଁ ।'

'ଖୁବ୍ ଶିଘ୍ର ଜାଲୁ ଧରା ହେବ । ସୁନୀଳ କହିଲେ— ପୋଲିସ ଖୁବ୍ ସହଜରେ ତା ଠାରୁ ଜାଣି ପାରିବେ ଯେ ସେ କାହା ପାଇଁ ଏ କାମ ସବୁ କରୁଥିଲା । ତୁମେ ମଜୁମଦାରଙ୍କୁ କହିଦେବ ଯେ ତୁମେ ତାଙ୍କ ପାଇଁ ଏ କାମ କରୁଛ ବୋଲି ମୁଁ ପୋଲିସ ପାଖରେ ଲୁଚାଇବି ନାହିଁ ।

ସୁନୀଲ ଉଠି ଠିଆହେଲେ । ସୁନୀଲ କହିଲେ—ମୁଁ ଜାଣିଛି ନୁହେଁ, ତେଣୁ ନିଜର ସବୁ ଠିକଣା ତୁମକୁ କହିଦେଲି । ମୁଁ ଯାଉଛି । ନମସ୍କାର ।

ସୁନୀଲ ବୁଲିପଡ଼ିଲେ ଏବଂ ଖୁବ୍ ଶୀଘ୍ର ବାହାରକୁ ଚାଲି ଆସିଲେ ।

***

ଘଣ୍ଟି ଶବ୍ଦ ଶୁଣି ଦମୟନ୍ତୀ କୋଶୀ ନିଜେ କବାଟ ଖୋଲିଲେ । ସାମନାରେ ସୁନୀଲ ଠିଆ ହୋଇଥିବା ଦେଖି ଆଶ୍ଚର୍ଯ୍ୟ ହେଲେ । ତାପରେ ହାତରେ ବାନ୍ଧି ଥିବା ଘଣ୍ଟା ଉପରେ ଦୃଷ୍ଟି ପକାଇଲେ ।

ସୁନୀଲ ଦୁଃଖ ପୂର୍ଣ୍ଣ ସ୍ୱରରେ କହିଲେ – ଏତେ ରାତିରେ ଆପଣଙ୍କୁ ଉତ୍ପାତ କରିଥିବାରୁ କ୍ଷମା ଚାହୁଁଛି । ମୁଁ ଆପଣଙ୍କର ଅଧିକ ସମୟ ନଷ୍ଟ କରିବି ନାହିଁ ।

ସେ କହିଲେ— 'ଆସ' ।

ସୁନୀଲ ଗୋଟିଏ ସୁସଜ୍ଜିତ ଡ୍ରଇଂ ରୁମ୍ ଭିତରେ ପ୍ରବେଶ କଲେ ।

ସେହି ସମୟରେ ଫ୍ଲାଟର ଆଉ ଗୋଟିଏ କବାଟ ଧୀର ଭାବେ ବନ୍ଦ ହେବାର ଶବ୍ଦ ସେ ଶୁଣିଲେ ।

ସୁନୀଲ କହିଲେ ମୁଁ ଜାଣି ନଥିଲି ଯେ ତୁମେ ତୁମ ସ୍ୱାମୀ ଠାରୁ ଅଲଗା ରହୁଛ ବୋଲି । ଆଜି ମୁଁ ଜାଣିଲି ।

ସେ କହିଲେ— 'ବସ ।'

ସୁଶୀଲ ଗୋଟିଏ ସୋଫାରେ ବସିଲେ ।

ଦମୟନ୍ତୀ ତାଙ୍କ ସାମନାରେ ବସିଲେ ।

ସୁଶୀଲ ଦେଖିଲେ ସେ ଗୋଟିଏ ଖୁବ୍ ସୁନ୍ଦର ମ୍ୟାକ୍ସି ପିନ୍ଧି ଖୁବ ସୁନ୍ଦର ଦେଖାଯାଉଥିଲେ ।

ଦମୟନ୍ତୀ ପଚ୍ଚରିଲେ— କଣ ପିଇବେ ?

ସୁଶୀଲ କହିଲେ - ନାଁ । ଧନ୍ୟବାଦ । ମୁଁ ଚାଲିଯିବି । କେଦାରନାଥଙ୍କୁ ଖୋଜୁଥିଲି । ମୁଁ ତାଙ୍କୁ କେଉଁଠି ହେଲେ ପାଉନାହିଁ । ଆପଣ ତାଙ୍କ ବିଷୟରେ ଜାଣନ୍ତି କି ?

ଉତ୍ତର ମିଳିଲା— ନାଁ

'ଆଜି କମର୍ସିଆଲ୍ଷ୍ଟ୍ରିଟରେ ଯେଉଁ ଫଟୋ ଉଠା ହୋଇଥିଲା ଆପଣ ସେ ବିଷୟ ନିଶ୍ଚୟ ଜାଣିଥିବେ ।

'ହଁ, ପୋଲିସ ଠାରୁ ଜାଣିଲି ।'

'ହଁ । ସେହି ବିଷୟରେ ପୋଲିସ ମୋ ଜୀବନ ଖାଇ ଯାଉଛି । ଶହ ଶହ ପ୍ରଶ୍ନ ମୋତେ ପଚ୍ଚରୁଛନ୍ତି ।

'ସତେ ?'

'ଫଟୋ କଥା ସେ କେମିତି ଜାଣିଲେ କେଜାଣି ?'

ସୁଶୀଲ କହିଲେ— ଜାଣେନା । 'ଆପଣ ତ ଜାଣିଥିବେ ଯେ କେଦାରନାଥ ମୋ ଠାରୁ ସେ ଫଟୋକୁ ହାସଲ କରିବା ପାଇଁ ବହୁତ ଚେଷ୍ଟା କରିଥିଲେ ।

'ମୁଁ ଜାଣେ ନାହିଁ ।'

'କାଲି ଆପଣ କେଦାରନାଥଙ୍କ ଅଫିସରେ ଅନେକ ସମୟ ପର୍ଯ୍ୟନ୍ତ ରହିଥିଲେ ?'

'ନାଁ । ଖୁବ୍ ବେଶୀ ହେଲେ ଦଶ ମିନିଟ୍ ।'

ଆପଣ ଜାଣିଛନ୍ତି, ଯେତେବେଳେ ଆପଣ କେଦାରନାଥଙ୍କ ସହିତ

କୋଠାରୁ ବାହାରକୁ ଆସୁଥିଲେ ଆପଣଙ୍କ ସ୍ୱାମୀ ସମ୍ଭବତଃ ସେପଟ କୋଠାରେ ଠିଆ ହୋଇ ଆପଣଙ୍କୁ ଦେଖୁଥିଲେ ।

'ହଁ ।'

'ସେଥିପାଇଁ ମୁଁ ଭାବୁଛି ସେ ଫଟୋ ହାସଲ କରିବା ତୁମେ ମଧ୍ୟ ଚାହୁଁଛ ।

'ସେ କହିଲେ ମୋର ଋଣ ଅଛି । ମୁଁ ତାଙ୍କ ଠାରୁ ଅଲଗା ହୋଇଯାଉଛି ଏବଂ ଖୁବ୍ ଶୀଘ୍ର ଛାଡ଼ପତ୍ରର ବ୍ୟବସ୍ଥା ହେଉଛି ।

'ସେ ଆପଣଙ୍କୁ ଖର୍ଚ୍ଚ ଦେଉଥିବତ ?'

'ତାଙ୍କୁ ଦେବାକୁ ପଡ଼ିବ । ତାହିଁକି ନ ଦେବେ ?'

'କିନ୍ତୁ ଯଦି ସେ ପ୍ରମାଣ କରିବେ ଯେ ଆପଣ ଅନ୍ୟ ପୁରୁଷଙ୍କ ସହିତ ସମ୍ବନ୍ଧ ରଖୁଛନ୍ତି, ତେବେ ନ୍ୟାୟ ଅନୁସାରେ ତାଙ୍କୁ ଖର୍ଚ୍ଚ ଦେବା ପାଇଁ ବାଧ୍ୟ କରାଯାଇ ନ ପାରେ ।

ଦମୟନ୍ତୀ ଚୁପ୍ ହୋଇଗଲେ । ତାଙ୍କ ଆଖି ଆଗରେ ଚିନ୍ତାର ଭାବନା ଜାଗ୍ରତ ହେଲା ।

ସେହି ଫଟୋ ଆପଣଙ୍କର ଅନ୍ୟ ପୁରୁଷ ସହ ସମ୍ପର୍କ ଥିବା ପ୍ରମାଣ କରିପାରେ । ଆପଣ ଅଲଗା ଥାଇ ପାରନ୍ତି, କିନ୍ତୁ ଆପଣ ସୋହନ-ଲାଲ ଜୋଶୀଙ୍କ ସ୍ତ୍ରୀ ତ । ତାହା ହିଁ ଆପଣଙ୍କୁ ଦ୍ୱନ୍ଦରେ ପକାଇବ । ବୋଧହୁଏ ଆପଣଙ୍କ ପାଇଁ କେଦାରନାଥ ମୋ ପାଖକୁ ସେ ଫଟୋ ମାଗିବାକୁ ଆସିଥିଲା ।

ସେ ନୀରବ ରହିଲେ ।

ଆପଣ ଯେତେବେଳେ କେଦାରନାଥଙ୍କ ଅଫିସରେ ଥିଲେ, ସେତେବେଳେ ତ୍ୟାଗୀ ଅଫିସରୁ କୌଣସି ଶବ୍ଦ କିମ୍ବା ଚିତ୍କାର ଶୁଣିଥିଲେ କି ?

ସେ କହିଲେ – 'ନାଁ ।'

'ଆପଣଙ୍କ ମତରେ ତ୍ୟାଗୀର ହତ୍ୟାକାଣ୍ଡ କିଏ ହୋଇ ପାରେ ?

ଦମୟନ୍ତୀ ଦୃଢ଼ଭାବ ସହ କହିଲେ — 'ଯୋଉଁନଳ 'ଜୋଶୀ ।

'ଠିକ୍ କହୁଛନ୍ତି ?'

'ହଁ । ଖାଗୀ ଯୋଗୁ ମୋ ସ୍ୱାମୀଙ୍କ ଜୁଆଘର ପେଶାଉ ହୋଇଥିଲା ଏବଂ ସେ ନଜେ ଖୁବ୍ କଷ୍ଟରେ ଜେଲ ଯାଉ ଯାଉ ରହିଗଲେ । ବର୍ତ୍ତମାନ ଜୁଆଘର ବିଷୟରେ ମଧ୍ୟ ଖାଗୀ ଜାଣିଥିଲା ଏବଂ ସେ ମୋ ସ୍ୱାମୀଙ୍କୁ ସବୁବେଳେ ଧମକାଉ ଥିଲା ଯେ ଯଦି ସେ ଖାଗୀକୁ କିଛି ଟଙ୍କା ପଇସା ନ ଦେବେ ସେ ପୋଲିସକୁ ଜଣାଇ ଦେବ ।

'ହତ୍ୟା ନ କଲେ ଖାଗୀର ଦାବୀ ସ୍ୱୀକାର କରିବା ସହଜ ନ ଥିଲା ।'

ମୁଁ ଜାଣେ ନାହିଁ ସହଜ କ'ଣ ଥିଲା । ତୁମେ ଗୋଟିଏ ପ୍ରଶ୍ନ ପଚାରିଲ ତାର ଉତ୍ତର ମୁଁ ଦେଲି ।

'ହୁଁ ।'

ଦମୟନ୍ତୀ ଘଣ୍ଟି ଉପରେ ଦୃଷ୍ଟିପାତ କଲେ ।

'ସୁଶୀଲ ଉଠୁ ଉଠୁ କହିଲେ— ଆଚ୍ଛା । ସହଯୋଗ ପାଇଁ ଧନ୍ୟବାଦ ।'

ଦମୟନ୍ତୀ ନୀରବ ରହିଲେ ।

ସୁଶୀଲ ସେଠାରୁ ଚାଲିଗଲେ ।

***

ସୁଶୀଲ ବ୍ୟାଙ୍କଷ୍ଟ୍ରିଟରେ ପହଞ୍ଚିବା ବେଳକୁ ପ୍ୟାରେଲାଲ ନମ୍ବର ଏକ ଜଳ ଫ୍ଲାଟ ସାମନାରେ ବୁଲୁଥିବାର ଦେଖିଲେ ।

'ସେ କିଛି କହିବା ପୂର୍ବରୁ ସୁଶୀଲ କହିଲେ— ଫଟୋ ବିଷୟରେ ତୁମ ସହିତ ପରେ କଥାବାର୍ତ୍ତା ହେବ । ତୁମେ ପ୍ରଥମେ ତୁମର ପ୍ରକୃତ ନାମ ମୋତେ କୁହ ।'

'ପ୍ରକୃତ ନାମ ? କ'ଣ ଅପ୍ରକୃତ ନାମ ମଧ୍ୟ ଥାଏ ?'

'ଦେଖ । ପ୍ରଶ୍ନ ବଦଳରେ ପ୍ରଶ୍ନ କରନାହିଁ ।'

ମୋର ନାମ ପ୍ୟାରେଲାଲ । ମୁଁ ଏଠାକାର ଗୋଟିଏ ହାର୍ଡୱେର

ଫାର୍ମର ମାଲିକ । ଏଇ ଦେଖନ୍ତୁ ମୋର ବିଜ୍‌ନେସ୍ କାର୍ଡ ।

ସୁଶୀଲ କାର୍ଡ ନେଲେ । କିଛି ସମୟ ସେ ତାକୁ ଓଲଟେଇ ପଲଟେଇ ଦେଖିଲେ । କାର୍ଡରୁ ସ୍ପଷ୍ଟ ଜଣାଯାଉ ନ ଥିଲା ଯେ ସେ ପ୍ୟାରେଲାଲ ବୋଲି, କିନ୍ତୁ ସେ ସତ କହୁଥିବାର ସୁଶୀଲ ଜାଣି ପାରିଲେ ।

ସୁଶୀଲ କହିଲେ— ସେଇ ଫଟୋ ପାଇଁ ତୁମେ 'ବ୍ଲାଷ୍ଟ' ଅଫିସକୁ ଦ୍ୱିତୀୟଥର ଯାଇଥିଲ ?

ଆଜ୍ଞା ହଁ । ସେଠାରୁ ତ ମୁଁ ଆପଣଙ୍କର ଘର ଠିକଣା ଜାଣିପାରିଲି ।

ତୁମେ ଡ୍ରାର୍କରୁମକୁ ଯାଇଥିଲ ?

ଆଜ୍ଞା ନାଁ । ଡ୍ରାର୍କରୁମ କେଉଁଠି ମୁଁ ଜାଣେ ନାହିଁ । ରିସେପ୍‌ସନରେ ଆପଣଙ୍କ ବିଷୟରେ ପଚାରି ଫେରି ଆସିଲି ।'

ସେତେବେଳେ ତୁମେ ଗଳିରେ କୌଣସି ଲୋକକୁ ଯିବାର ଦେଖିଥିଲ କି ?

'ନାଁ ।'

'ସେ ଫଟୋ ତୁମର କାହିଁକି ଦରକାର ?'

'ମୋର ସେ ଫଟୋ ଦରକାର ନାହିଁ । ସେ ଫଟୋ ଯେପରି ଛପା ନ ଯାଉ ତାହାହିଁ ମୋର ଦରକାର ଏବଂ ଯଦି ଛପାଯାଏ ତେବେ ସେଥିରୁ ମୋ ଫଟୋ କାଟି ଦିଆଯାଉ । ଆପଣ ଜଣେ ଭଲଲୋକ । ମୋର ବିଶ୍ୱାସ ଆପଣ ମୋ ପ୍ରତି ଏତିକି ଦୟା କରିବେ । ଆପଣଙ୍କର ତ କିଛି କ୍ଷତି ହେବ ନାହିଁ । ମୁଁ ଅନେକ ବଡ଼ ବିପଦରୁ ରକ୍ଷା ପାଇଯିବି ।

'କାରଣ କ'ଣ ?'

ପ୍ୟାରେଲାଲ ପ୍ରକୃତ ଘଟଣା କହିଦେଲେ ଯେ, ସେ ବମ୍ବେ ଯିବା ବାହାନା କରି ନିଜ ଷ୍ଟେନୋ ସହ କମର୍ସିଆଲ୍ ଷ୍ଟ୍ରିଟରେ ଗୋଟିଏ ହୋଟେଲରେ ରହିଥିଲେ ଏବଂ ଖବରକାଗଜରେ ସେହି ଫଟୋ ଛପା ଗଲେ ତାଙ୍କର କଥାଟା ଜଣା ପଡ଼ିଯିବ ।

ସୁଶୀଲ ଚିନ୍ତା କରୁଥିଲେ ଯେ ସେ କାହିଁ ହତାକାରୀ ବୁଝିହେବ । ସେ

ହଠାକାଶ ଯେ ଫଟୋ ହାସଲ କରିବେ ସେମିତ ଜଣା ମଜୁମ୍ଦାର ଥିଲେ । ଦ୍ୱିତୀୟରେ ଯଦ ସେ ଫଟୋ ହାସଲ କରିବେ ତେବେ ସେ ସେଠାକୁ କାହିଁକ ଆସିବେ ।

ସୁନୀଲ ଆଶ୍ୱାସନା ଦେଇ କହିଲେ—ପ୍ୟାରେଲାଲ, ତୁମେ ଚନ୍ତା କର ନାହିଁ । ସେ ଫଟୋ ଖବର କାଗଜରେ ଛପା ହେବ ନାହିଁ ।

ପ୍ୟାରେଲାଲ ଶାନ୍ତିରେ ନିଃଶ୍ୱାସମାରିଲେ ଏବଂ ସୁନୀଲଙ୍କୁ ଧନ୍ୟବାଦ ଦେଲେ ।

ସୁନୀଲ ନିଜ ଫ୍ଲାଟକୁ ଗଲେ । ସେ ଫ୍ଲାଟରେ ପହଞ୍ଚି କୋଟ ଖୋଲୁଥିବା ସମୟରେ କଲିଂ ବେଲ ବାଜିଲା ।

ସୁନୀଲ କବାଟ ପାଖକୁ ଗଲେ ।

ସୁନୀଲ ପଚାରିଲେ – 'କିଏ' ?

'ମଜୁମ୍ଦାର' ।

ସୁନୀଲ କବାଟ ଖୋଲିଲେ । ସାମନାରେ ଏ. କେ. ମଜୁମ୍ଦାର ଠିଆ ହୋଇଥିଲେ ।

ସୁନୀଲ କହିଲେ – ତା'ହେଲେ ଆପଣଙ୍କ ପାଖରେ ଖବରଟା ପହଞ୍ଚି ଯାଇଛି । ମୁଁ ଆସିବା ଆଗରୁ ସାଙ୍ଗେ ଜୋଶୀ ଆପଣଙ୍କ ଘରକୁ ଫୋନ କରି ଦେଇଛି ।

ମଜୁମ୍ଦାର ସରଳ ସ୍ୱରରେ କହିଲେ – ହାଁ, ସୁନୀଲ ମୁଁ ଭିତରକୁ ଯାଇପାରେ କି ?

'ଆସନ୍ତୁ ।'

ସେ ଭିତରକୁ ଆସିଲେ ।

'ବସନ୍ତୁ ।'

ସେ ବସିଲେ ।

'କୁହନ୍ତୁ ।'

ଜୋଶୀ ମୋ ପାଖକୁ କୌଣସି ଫୋନ କରିନାହାନ୍ତି । ମୁଁ ନିଜେ ଏଠାକୁ ଆସିଛି ।

'କାହିଁକି କୁହନ୍ତୁ ?'

ଆଜି ଦ୍ୱିପ୍ରହର ପରେ ତୁମେ ଯେଉଁ ଫଟୋ କମର୍ସିଆଲଷ୍ଟ୍ରିଟରେ ଉଠାଇଥିଲ, ମୁଁ ସେଇଟା ତୁମଠାରୁ ମାଗିବାକୁ ଆସିଛୁ ।

'କାହିଁକି ? ଆପଣଙ୍କର ସେ ଫଟୋ କ'ଣ ଦରକାର ?'

କାରଣ ସେ ଫଟୋ ମଧ୍ୟରେ ମୋ ଝିଅର ଫଟୋ ମଧ୍ୟ ଅଛି । ମୋ ଝିଅର ମଙ୍ଗଳ ପାଇଁ ମୋର ସେ ଫଟୋ ଦରକାର । ସେ ଯେତେବେଳେ କମର୍ସିଆଲଷ୍ଟ୍ରିଟରେ ଥିଲା, ସେତିକିବେଳେ ହରପ୍ରକାଶ ତ୍ୟାଗୀର ହତ୍ୟା ହୋଇଥିଲା । ମୋ ଝିଅ ହତ୍ୟା କରିଛି ବୋଲି ସନ୍ଦେହ କରି ଯାଇପାରେ । ଯଦି ସେହି ଫଟୋ ପ୍ରମାଣଟା ନ ମିଳେ ତେବେ ମୁଁ ପ୍ରମାଣ କରିପାରେ ଯେ ଖୁନ୍ ହତ୍ୟା ସମୟରେ ମୋ ଝିଅ କର୍ଣ୍ଣନଗରରେ ତା ମାଉସୀ ପାଖରେ ଥିଲା ।

ଆପଣ ଆଗରୁ ମୋ ପାଖକୁ ଆସିଲେ କାହିଁ ?

'ଅର୍ଥ ?'

ଆପଣ ଠିକ୍ ଅର୍ଥ ବୁଝନ୍ତି । ଜୋଶୀ ଓ ତାର ଗୁଣ୍ଡାଙ୍କ ଦ୍ୱାରା ସେହି ଫଟୋ ହାସଲ କରି ନ ହେବାରୁ ଆପଣ ନିଜେ ଆସିଲେ । ଆପଣ ବର୍ତ୍ତମାନ କହିବେ ଯେ ମୁଁ ସେପରି କୌଣସି ପଦକ୍ଷେପ ନେଇ ନ ଥିଲି ।

'ନାଁ, କହିବି ନାହିଁ ।'

'ତା'ହେଲେ ଆପଣ ସ୍ୱୀକାର କରୁଛନ୍ତି ଯେ ସେହି ଗୁଣ୍ଡାଙ୍କୁ ଆପଣଙ୍କ କହିବା ଅନୁସାରେ ଜୋଶୀ ମୋ ପଛରେ ଲଗାଇଥିଲେ ?'

'ହଁ ।'

ସୁନୀଲ ତାଙ୍କ ମୁହଁକୁ ଚାହିଁ ରହିଲେ ।

ମଜୁମଦାର କହିଲେ – 'ମୁଁ ଯାହା କିଛି କରିଛି ମୋ ଝିଅର ମଙ୍ଗଳ ପାଇଁ କରିଛି । ତା'ର ଗୋଟିଏ ବଡ ଖାନଦାନ ଘରେ ବିବାହ ଠିକ୍ ହୋଇଛି । ତ୍ୟାଗୀ ହତ୍ୟା ସହ ତା ର ନାମ ସମ୍ପୃକ୍ତ ରହିଲେ ସବୁ ଖରାପ ହେବ । ମୋ ଝିଅର ସୁଖ ପାଇଁ ଯାହା କହିବ ମୁଁ କରିବାକୁ ପ୍ରସ୍ତୁତ ଅଛି ।

ସେଥିପାଇଁ ମୁଁ ତାକୁ ତା ମାଉସୀ ଘର ବର୍ଣ୍ଣନଗରକୁ ପଠାଇ ଦେଇଛୁ । ସେ ଫଟୋଟି ମୋତେ ମିଳିଗଲେ କେହି କହି ପାରିବେ ନାହିଁ ଯେ ହତ୍ୟା ସମୟରେ ସେ କମର୍ସିଆଲଷ୍ଟ୍ରିଟ୍‌ରେ ଥିଲି ବୋଲି ।

'ଆପଣଙ୍କର ଅଚଳା ସହିତ ଦେଖା ହୋଇନ ।'

'କେବେ ?'

'ସେ ବର୍ଣ୍ଣନଗରରୁ ଫେରିବା ପରେ ।'

'ସେ ବର୍ଣ୍ଣନଗରରୁ ଫେରି ଆସିଛୁ ! କେବେ ?'

ସେ ସାଙ୍ଗେ ସାଙ୍ଗେ ଫେରି ଆସିଥିଲି । ମୁଁ ତାକୁ ଡକାଇ ଥିଲି । ହତ୍ୟା ବିଷୟରେ ସେ ସନ୍ଦେହରେ ପଡ଼ିଥିଲି । ସେ ଗୁଳି ଚଳାଇଥିଲି ସତ କିନ୍ତୁ ତ୍ୟାଗୀକୁ ହତ୍ୟା କରି ନାହିଁ ।

ସୁଶୀଲ୍ ତାଙ୍କୁ ସବୁ କଥା କହିଦେଲେ ।

ମଜୁମଦାର ଦୀର୍ଘଶ୍ୱାସ ନେଇ କହିଲେ – ଭଗବାନଙ୍କର ଦୟା । ମୋର ଗୋଟିଏ ଚିନ୍ତା ଗଲା । ତଥାପି ମୋର ସେ ଫଟୋ ଦରକାର ।

'ବର୍ତ୍ତମାନ ଆପଣ ସେ ଫଟୋ ନେଇ କ'ଣ କରିବେ ? ସେହି ଫଟୋ ପ୍ରମାଣିତ କରିପାରେ ଯେ ଅଚଳା କମର୍ସିଆଲଷ୍ଟ୍ରିଟରେ ଥିଲା । ବର୍ତ୍ତମାନ ସେ କଥାର କିଛି ଆବଶ୍ୟକ ନାହିଁ । ଆଚ୍ଛା ତା'ହେଲେ ସେ ଫଟୋ ଆପଣଙ୍କର ନିଜ ପାଇଁ ଦରକାର ।'

ମଜୁମଦାର ଚୁପ୍ ରହିଲେ ।

ତ୍ୟାଗୀ ଆପଣଙ୍କୁ ମଧ୍ୟ ବ୍ଲାକ୍‌ମେଲ କରୁଥିଲା ?

'ହଁ ଦୁଇ ବର୍ଷ ହେଲା ।'

ଆପଣ ତ୍ୟାଗୀର ହତ୍ୟା କରିଛନ୍ତି ।

'ନାଁ ।'

ସୁଶୀଲ କହିଲେ—ଆପଣ ଯଦି ସେ ଫଟୋ ଆଦାୟ କରିବା ପାଇଁ ଆପଣ ନିଜେ କିମ୍ବା କୋଣାର ମାଧ୍ୟମରେ ଠାକୁରଙ୍କୁ ହତ୍ୟା କରିଥାଆନ୍ତି ତା'ହେଲେ ଆପଣଙ୍କର ରକ୍ଷା ନାହିଁ । ଆପଣ ଯେତେ ଧନୀ ବ୍ୟକ୍ତି ହେଲେ

ମଧ୍ୟ ଯଦି ଠାକୁରଙ୍କ ମୃତ୍ୟୁରେ ଆପଣଙ୍କର ହାତ ଥିବ ତେବେ ଆପଣଙ୍କୁ ନିଶ୍ଚୟ ଶାସ୍ତି ମିଳିବ । ଯଦି ଆପଣ କାନୁନ୍ ଦୃଷ୍ଟିରେ ରକ୍ଷା ପାଇଯିବେ, ତେବେ ମୋ ହାତରୁ ରକ୍ଷା ପାଇ ପାରିବେ ନାହିଁ । ମୁଁ ନିଜେ ମୋ ହାତରେ ଆପଣଙ୍କର ବେକ କାଟି ଦେବି ।

ମଜୁମଦାର ଚୁପ୍ ରହିଲେ ।

ସୁନୀଲ କହିଲେ— ଆସନ୍ତୁ ଆପଣଙ୍କୁ ଗେଟ ପର୍ଯ୍ୟନ୍ତ ଛାଡ଼ି ଦେବି ।

ମଜୁମଦାର ଉଠିଲେ ଏବଂ ଯିବାପାଇଁ ଅଗ୍ରସର ହେଲେ ।

***

ପରଦିନ ୧୦ଟା ସମୟରେ ମଲ୍ଲିକବାବୁଙ୍କ ଅଫିସରେ ମଲ୍ଲିକବାବୁଙ୍କ ଟେବୁଲ ସାମନାରେ ରୁକ୍ମିଣୀ ଓ ସୁନୀଲ ବସିଥିଲେ ।

ସକାଳେ ଠାକୁରଙ୍କର ଶବ ସତ୍କାର ହୋଇ ଯାଇଥିଲା ଏବଂ ସେମାନେ ଭାରି ଦୁଃଖ ମନରେ ଫେରିଥିଲେ ।

ମଲ୍ଲିକବାବୁ କହିଲେ –ମୁଁ ସନ୍ଧାନ ନେଇଛି ଯେ ସେହି ଫଟୋ ବାକ୍ସ ନେଇ କେତେ ଜଣ ଏଠାକୁ ଆସିଥିଲେ ? କାଲୁ ନାମକ ଜଣେ ଗୁଣ୍ଡା ଆସିଥିଲା, ମୁଁ ଭାବୁଛି ସେ ହତ୍ୟାକାରୀ ହୋଇ ନପାରେ । ସେତ ତାଙ୍କ ରୁମକୁ ଝୁଙ୍କି ପଡ଼ି ଦେଖିଲା ଏବଂ ଜାଣେ କେହି ତାକୁ ହତ୍ୟାକାରୀ ବୋଲି କହିବ, ସେଥିପାଇଁ ସେ ଦୌଡ଼ି ପଳାଇଲା । ମାନସିଂହ କହୁଥିଲା ଯେ ସେ ଭାରି ଆତଙ୍କିତ ଜଣା ପଡୁଥିଲା । ଯଦି ସେ ହତ୍ୟା କରି ଥାଆନ୍ତା ତାହେଲେ ସେ ନିଜକୁ ସନ୍ଦେହରେ ପକାଇବାକୁ ଦୌଡ଼ି ଯାଇ ନଥାନ୍ତା । ସେ ଏଠାରୁ ଧୀରେ ଧୀରେ ଯାଇ ଥାଆନ୍ତା, ସତେ ଯେପରି କିଛି ହୋଇ ନାହିଁ ।

ସୁନୀଲ ଓ ରୁକ୍ମିଣୀ ସହମତରେ ମୁଣ୍ଡ ଟୁଙ୍ଗାରିଲେ ।

ତାଛଡ଼ା ପୂର୍ବଦିନ ରାତିରେ ଏଠାକୁ ଜୀବନ ମାଲହୋତ୍ରା ଏବଂ କେଦାରନାଥ ଦୁହେଁ ଏଠାକୁ ଆସିଥିଲେ, ଯାହାର ନାମ

ତୁମେ ପ୍ୟାରେଲାଲ ନମ୍ବର ଏକ ଓ ପ୍ୟାରେଲାଲ ନମ୍ବର ଦୁଇ ବୋଲି କହୁଥିଲ ।

ଗୋଟିକୁ ଗୋଟି ଯୋଡ଼ି ସୁନୀଲର ସବୁ କଥା ମନେ ହେଲା । ପ୍ୟାରେଲାଲ ନମ୍ବର ଦୁଇର ସେଇ ଟେଲିଫୋନ କଥା ସେ ଭୁଲି ଯାଇଥିଲେ ସେଇଁଠାକୁ ସେ ପ୍ରହ୍ଲାଦସ୍ୱାମୀଙ୍କୁ ଦେଇଥିଲେ ।

ସୁନୀଲ କହିଲେ ମୁଁ ଟିକଏ ଫୋନ କରୁଛି— ସେ ମଲ୍ଲିକ ବାବୁଙ୍କର ଟେଲିଫୋନ ତାଙ୍କ ଆଡ଼କୁ ଘୁଞ୍ଚାଇ ନେଲେ ।

ସେ ପୋଲିସ ହେଡ଼କ୍ୱାଟରର ପ୍ରହ୍ଲାଦସ୍ୱାମୀଙ୍କ ପାଖକୁ ଫୋନ କଲେ

ସୁନୀଲ କହିଲେ— ମୁଁ ସୁନୀଲ କହୁଛି, କାଲି ଯେଉଁ ଟେଲିଭର ମୁଁ ଆପଣଙ୍କୁ ଦେଇଥିଲି, ସେ ବିଷୟରେ କିଛି ସନ୍ଧାନ ପାଇଲେ ? 'ଅଚ୍ଛା ! ଠିକ୍ ଅଛି, ଆମେ ଫିରୁ !'... ସେ ରିସିଭର ରଖିଦେଲେ ଏବଂ କହିଲେ – ଖୁବ୍ ଚିନ୍ତାଜନକ କଥା ଜଣା ହେଲା । ପ୍ୟାରେଲାଲ ନମ୍ବର ଦୁଇ ହେଉଛି ନ୍ୟାସନାଲ ବ୍ୟାଙ୍କରୁ ପାଞ୍ଚଲକ୍ଷ ଟଙ୍କା ନେଇ ଫେରାର ହୋଇ ଯାଇଥିବା କ୍ୟାସିଅର ନାରାୟଣ କୁମାର, ଯାହା ବିଷୟରେ ଶୁଣା ଯାଉଥିଲା ଯେ ସେ ସମୁଦ୍ରରେ ବୁଡ଼ି ମରିଯାଇଛି । ଟେଲିଭରରେ ଥିବା ପ୍ୟାରେଲାଲ ନମ୍ବର ଦୁଇର ଆଙ୍ଗୁଠି ଚିହ୍ନ ସହିତ ଅପରାଧୀ ନାରାୟଣ କୁମାରର ଅଙ୍ଗୁଠି ଚିହ୍ନ ମିଶି ଯାଉଛି ।

ରୁକ୍ମିଣୀ କହିଲେ— ସେଥିପାଇଁ ସେ ଫଟୋ ସ୍ୱାଗତକୁ କହିବାକୁ ଆସିଥିଲା । ହଁ ସୁନୀଲ, ଖାଗୀର ଟାଇପ୍ ମେସିନରେ ଯେଉଁ କାଗଜ ଲାଗିଥିଲା ସେ କଥା ମନେ ପକାଅ । ସେଥିରେ ଲେଖାଥିଲା ଯେ ଖାଗୀ ଜାଣିଥିଲେ ଯେ ନାରାୟଣ କୁମାର ଜୀବିତ ଏବଂ ସେ ଏହି ସହରରେ ଅଛନ୍ତି । କିଏ ଜାଣେ ଖାଗୀ ନାରାୟଣ କୁମାରଙ୍କୁ ବ୍ଲାକ ମେଲିଂ କରିବାକୁ ଚାହୁଁଥିଲା ଏବଂ ନାରାୟଣ କୁମାର ସବୁ ଦିନ ପାଇଁ ତାର ମୁହଁ ବନ୍ଦ କରି ଦେବା ପାଇଁ ତାଙ୍କୁ ହତ୍ୟା କରିଥିବେ ।

ମଲ୍ଲିକବାବୁ କହିଲେ— 'ହୋଇପାରେ !' ମାନସିଂ କହିବା

ଅନୁସାରେ ସେହି ପ୍ରେଞ୍ଚକଟ୍ ରଖିଥିବା ଲୋକ ଯେ ନାରାୟଣ କୁମାର ତାହା ଆମକୁ ଏବେ ଜଣା ପଡ଼ିଲା । ପ୍ରାୟ ୮ଟା ବେଳେ ଏଠାକୁ ଆସିଥିଲା । ମାନସିଂ କହୁଥିଲା ଯେ ସେ ସିଧା ରୁମ ଡ୍ୟାବିନଙ୍କୁ ଯାଇଥିଲା ଏବଂ ହୋଇପାରେ ଯେ ଡାର୍କରୁମ୍‌କୁ ମଧ୍ୟ ଯାଇଥିବ ?

ସୁନୀଲ କହିଲେ – 'ସେ ତାକୁ ଦେଖି ନ ଥିଲା ?'

ନାଁ ସେ ନଭେଲ ପଢ଼ୁଥିଲା । ନିମାଣୀ, ତାକୁ ସାବଧାନ କରିଦିଅ ଯେ ଡ୍ୟୁଟି ସମୟରେ ନଭେଲ ପଢ଼ିବନାହିଁ ।

'Yes Sir— ନିମାଣୀ କହିଲେ ।

ଜୀବନ ମାଲହୋତ୍ରା ମଧ୍ୟ ଏଠାକୁ ଆସିଥିଲେ । ସେ ମଧ୍ୟ ହତ୍ୟାକାରୀ ହୋଇପାରନ୍ତି ? ମଲ୍ଲିକବାବୁ କହିଲେ— ପୋଲିସ ତାଙ୍କୁ ପଚାରିଲେ । ସେ ସ୍ୱୀକାର କଲେ ଯେ ସୁନୀଲ ସହିତ ଦେଖା କରିବାକୁ ପ୍ରାୟ ସାଢ଼େ ଆଠଟାରେ ଏଠାକୁ ଆସିଥିଲେ ଏବଂ ଦଶ ମିନଟ୍ ଅପେକ୍ଷାକରି ଚାଲିଗଲେ । ସେ କହୁଥିଲେ ଯେ ରିସେପ୍ସନ ଠାରୁ ଆଗକୁ ଯାଇ ନ ଥିଲେ । ତା ସାମନାରେ କୌଣସି ଲୋକ ସେ ବାଟେ ଯାଇ ନ ଥିଲେ କି ଆସି ନ ଥିଲେ । ଭଗବାନ ଜାଣନ୍ତି ସେ ସତ କହିଲେ କି ମିଛ କହିଲେ ।

କେହି କିଛି କହିଲେ ନାହିଁ ।

'ପ୍ୟାରେଲାଲ ନମ୍ବର ଏକ ଆସିଥିଲା ଏବଂ

'ସୁନୀଲ କହିଲେ— ତାର ନାମ ହିଁ ପ୍ୟାରେଲାଲ । ସେ ହତ୍ୟାକାରୀ ହୋଇ ନ ପାରେ । ସେ ହତ୍ୟା ପରେ ମଧ୍ୟ ମୋ ପାଖକୁ ଫଟୋ ମାଗିବାକୁ ଆସିଥିଲା ।

ମଲ୍ଲିକ ବାବୁ କହିଲେ— ମୁଁ ମଧ୍ୟ ଭାବୁଛି ଯେ ସେ ହତ୍ୟାକାରୀ ହୋଇ ନ ପାରେ । ସେ ଯେତେବେଳେ ଏଠାକୁ ଆସିଥିଲା, ମାନସିଂ ଠାରୁ ଜାଣିଲା ଯେ ତୁମେ ଅଫିସରେ ନାହଁ, ସେ ଫେରିଗଲା । କିନ୍ତୁ ପୂର୍ବଦିନ ଅନେକ ବେଳ ପର୍ଯ୍ୟନ୍ତ କୋଠାର ମୁଖ୍ୟଦ୍ୱାର ପାଖରେ ବୁଲୁଥିବାର ଦେଖା

ଯାଇଥିଲା । ବିଶ୍ୱାସ ହେଉଛି ସୁଯୋଗ ପାଇ ଚକ୍ରପତି ଉପରକୁ ଆସିଥିବ ଏବଂ କେହି ହତ୍ୟାକୁ ଜାଣି ପାରି ନ ଥିବେ ।

ସୁନୀଲ ପଚାରିଲେ— ମାନସିଂ ତାକୁ ଦେଖି ନାହିଁ ।

ମଲ୍ଲିକ ବାବୁ ବିତୃଷ୍ଣାପୂର୍ଣ୍ଣ ସ୍ୱରରେ କହିଲେ— 'ନା, ସେ ତ ନଭେଲ ପଢିବାରେ ବ୍ୟସ୍ତଥିଲା ।'

ସୁନୀଲ ଚୁପ୍ ରହିଲେ ।

ମଲ୍ଲିକ ବାବୁ କହିଲେ— ସେହି ଫଟୋର ଗୋଟିଏ ପ୍ରିଣ୍ଟ ଆମ ହାତକୁ ଆସିଯାଆନ୍ତା, ତେବେ ବହୁତ କଥା ଜଣା ପଡି ପାରନ୍ତା । 'ତୁମେ-ମାନେ ଡାର୍କରୁମ୍ ଭଲଭାବେ ଦେଖିଥିଲ ?'

ସୁନୀଲ କହିଲେ— ଖୁବ୍ ଭଲ ଭାବେ ଦେଖିଥିଲୁ । ହତ୍ୟାକାରୀ ସେଠାରେ କୌଣସି ଜିନିଷ ଛାଡି ନାହିଁ । ନିଜର ଦରକାରୀ ଫଟୋ ଖୋଜିବାକୁ ତା ପାଖରେ ସମୟ ନ ଥିଲା । ସେ ସେଠାରୁ ଶୀଘ୍ର ଚାଲି ଯିବାକୁ ଚାହୁଁଥିଲା । ତେଣୁ ଡାର୍କରୁମ୍‌ରେ ଯେତେ ନେଗେଟିଭ୍ ଥିଲା ଯେତେ ପ୍ରିଣ୍ଟ ଥିଲା ସବୁ ଗୁଡ଼ିକ ନେଇ ପଳାଇଛି ।

ମଲ୍ଲିକ ବାବୁ କହିଲେ — 'ହୁଁ ।' ବନ୍ଧୁରଲାଲ ତୁମେ ପୋଲିସ ପଛରେ ଥାଅ ଏବଂ ହତ୍ୟାକାରୀକୁ ଖୋଜିବା ପାଇଁ ବ୍ୟକ୍ତିଗତ ଚେଷ୍ଟା କର । ତୁମେ ଦୁହେଁ ତୁମର ନିଜ ଧନ୍ଦା କାମ ଛାଡି ଏହି କାମରେ ଲାଗିପଡ଼ ।

ସୁନୀଲ ଓ ନିମାଣୀ ଦୁହେଁ ସମ୍ମତି ପ୍ରକାଶ କଲେ ।

'ବର୍ତ୍ତମାନ ଆପଣମାନେ ଯାଇ ପାରନ୍ତି ।'

ଦୁହେଁ ମଲ୍ଲିକ ବାବୁଙ୍କୁ ଅଭିବାଦନ ଜଣାଇ ବାହାରକୁ ଆସିଲେ ।

ସୁନୀଲ ବାହାରକୁ ଆସି କହିଲେ - ପୋଲିସ୍ ଷ୍ଟେସନରୁ ଡକରା ଆସିଛି ।

ନିମାଣୀ କହିଲେ— ତୁମେ ସେଠାକୁ ଯାଅ । ତୁମକୁ ମଧ୍ୟ ଯିବାକୁ ପଡ଼ିବ ଇନସ୍‌ପେକ୍ଟର ପ୍ରଭୁଦୟାଲ ତୁମକୁ ମଧ୍ୟ ଡାକିଛନ୍ତି ।

'ଆରେ ମୋର ତ ଯିବାକୁ ଇଚ୍ଛା ହେଉନାହିଁ । ମୋର ମୁଣ୍ଡ୍ ଖରାପ ହୋଇଯାଇଛି । ସେଠାରେ ପହଞ୍ଚିଲେ ପୁଣି ସେହି କଥା ବିଷୟ ଆଲୋଚନା ହେବ ଏବଂ ମୋ ଆଖି ଆଗରେ ସେ ବୀଭତ୍ସ କାଣ୍ଡ ପୁଣି ନାଚ ଉଠିବ ଗୋଟିଏ ଦିନରେ ଦୁଇଟି ଶବ ଦେଖିବାକୁ ପଡ଼ିଲା । ପ୍ରଥମେ ବନ୍ଧୁ ତ୍ୟାଗୀର ଶବ ଏବଂ ଦ୍ୱିତୀୟରେ ଠାକୁରର ଶବ ।

ଆରେ ଭାଇ ଯିବାକୁ ତ ପଡ଼ିବ । ସରକାରୀ ଡକରା ଆସିଛି ।

'ଅଲ୍ ରାଇଟ୍ । ଚାଲ ।'

ଦୁହେଁ ବାହାରକୁ ଗଲେ ।

***

ଇନସ୍ପେକ୍ଟର ପ୍ରଭୁଦୟାଲଙ୍କ ଚେମ୍ବାରରେ ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ରାମସିଂ ବସିଥିଲେ । ତାଙ୍କ ମୁହଁରେ ଖଣ୍ଡିଏ ସଦ୍ୟ ଲଗାଇଥିବା ସିଗାରେଟ ଥିଲା ।

ଟେବୁଲର ଅନ୍ୟପଟେ ଗୋଟିଏ ଚେୟାରରେ ପ୍ରଭୁଦୟାଲ ବସିଥିଲେ । ତାଙ୍କ ପାଖରେ ଟିକିଏ ପଛକୁ ଜଣେ ପୋଲିସ ଷ୍ଟେନୋଗ୍ରାଫର ବସିଥିଲେ ।

ରାମସିଂ ସୁନୀଲ ଓ ହିମାଣୀକୁ କହିଲେ—'ଆପଣମାନେ ବସନ୍ତୁ ।'

ତା'ପରେ ତ୍ୟାଗୀ ହତ୍ୟା ସହ ଜଡ଼ିତ ସମ୍ପର୍କରେ ସମସ୍ତ ଘଟଣା କହିବାକୁ ସୁନୀଲକୁ କହିଲେ ।

ଘଟଣା ଶୁଣିବା ପରେ ରାମସିଂ ସୁନୀଲ ଉପରେ ବହୁତ ରାଗିଯାଇ କହିଲେ—ସେ ତ୍ୟାଗୀ ହତ୍ୟା ଘଟଣା ଜାଣି କେବଳ ଚୁପ ରହି ନଥିଲେ, ସେ ଅନଧିକୃତ ଓ ଅବାଞ୍ଛିତ ଭାବେ ତ୍ୟାଗୀ ଅଫିସକୁ ଯାଇଥିଲେ ।

ସୁନୀଲ ଚୁପ୍‌ଚାପ ମୁଣ୍ଡ ନୁଆଁଇ ସବୁ ଶୁଣିଲେ ।

ତା'ପରେ ହିମାଣୀ ନିଜ କଥା କହିଲେ । ସେ କହିଲେ ବର୍ତ୍ତମାନ ସୁଦ୍ଧା ସେ ଜାଣି ପାରିନାହାନ୍ତି ଯେ ତ୍ୟାଗୀ ହତ୍ୟା ବିଷୟରେ ଯେଉଁ ଝିଅ

'ବ୍ଲାଷ୍ଟ' ଅଫିସକୁ ଫୋନ କରିଥିଲା ସେ କିଏ ?

ଅଚଳା ମଜୁମଦାର ସେହି କୋଠାରେ ଉପସ୍ଥିତ ଥିଲା, ସେ ଘଟଣା ମଧ୍ୟ ଆପଣ ଲୁଚାଇ ଭୁଲ କରିଛନ୍ତି ବୋଲି ରାମସିଂ କହିଲେ ।

ନିମାଣୀ କହିଲେ—'ସେତେବେଳେ ମୋର ଧାରଣା ଥିଲା ଯେ ଅଚଳାର ତ୍ୟାଗୀ ହତ୍ୟା ସହ କୌଣସି ସମ୍ବନ୍ଧ ଥାଇ ନପାରେ ।'

'ଅଲ୍ ଦି ସେମ୍ ୟୁ ସୁଡ୍ ହ୍ୟାବ୍ ଟୋଲ୍ଡ ଅସ୍ ।'

ନିମାଣୀ ଚୁପ୍ ରହିଲେ ।

ରାମସିଂ ଆଦେଶ ଦେଲେ—ସୋହନଲାଲ ଜୋଶୀଙ୍କୁ ଡାକ ।

ଜୋଶୀ ଆସିଲେ । ସେ ସୁନୀଲ ଆଡକୁ ଅନାଇ ଗୋଟିଏ ଚେୟାରରେ ବସିଲେ ।

ରାମସିଂ ପଚାରିଲେ— 'ତ୍ୟାଗୀର ହତ୍ୟା ହେବା ସମୟରେ ତୁମେ କମର୍ସିଆଲଷ୍ଟ୍ରିଟ୍‌ରେ ଥିଲ ?

ଜୋଶୀ କହିଲେ—'କିଏ କହିଲା ?'

'ସୁନୀଲ କହୁଛନ୍ତି ।'

'ତାଙ୍କ କହିବାରେ କ'ଣ ଅଛି ?'

'ତୁମେ ସେଠାରେ ଥିଲ କି ନାହିଁ ?'

'ନ ଥିଲି ।'

'କିନ୍ତୁ ପରେ ପୋଲିସ ଉପସ୍ଥିତହେଲେ ତ୍ୟାଗୀର ଅଫିସରେ ପହଞ୍ଚିଥିଲ ?'

'ହଁ ।'

'କାହିଁକି ?'

ଜୋଶୀ ପୂର୍ବରୁ ପ୍ରଭୁଦୟାଳଙ୍କୁ ଯାହା କହିଥିଲେ ସେଇ କଥା କହିଲେ ।

'ତା'ପରେ ତୁମେ ଗୋଟିଏ ହୋଟେଲକୁ ଯାଇ ସେଠାରୁ ମଜୁମଦାରଙ୍କ ଘରକୁ ଟେଲିଫୋନ୍ କରିଥିଲ ଏବଂ...... ।'

'କିଏ କହୁଛି ?'

ପ୍ରାକ୍ଷମିନଷ୍ଟ ପର୍ଯ୍ୟନ୍ତ ଏହି କଥା ବାର୍ତ୍ତା ଚାଲିଲା । ଜୋଶୀ ସବୁକଥା ଫାଙ୍କି ଦେଲେ । ସେ କହିଲେ ମୁଁ ମଜୁମଦାରଙ୍କ ଘରକୁ ଫୋନ କରିନାହିଁ କି ସୁମାଲ ପଛରେ ଗୁଣ୍ଡା ଲଗାଇ ନାହିଁ । ସେ ଚ୍ୟାଲେଂଜ କରି କହିଲେ ଯେ ଯଦି ମୁଁ ମିଛ କହୁଥିଲି, ତେବେ ପ୍ରମାଣ କରି ଦେଖାନ୍ତୁ ମୁଁ ମିଛ କହୁଥିଲି ବୋଲି ।

ତାଙ୍କୁ ସେଠାରୁ ଛୁଟି ଦିଆଗଲା ।

ରାମସିଂ ସୁମାଲଙ୍କୁ କହିଲେ – ତୁମକୁ ଏଥିପାଇଁ ବସାଇ ରଖିଥିଲି ଯେ ତୁମ ଉପସ୍ଥିତିରେ ସେ ମିଛ କହିବ ନାହିଁ, କିନ୍ତୁ ସେ ସେଥିପାଇଁ ଟିକିଏ ଖାତିର ମଧ୍ୟ କଲା ନାହିଁ ।

ରାମସିଂ ପ୍ରଭୁଦୟାଳଙ୍କ ଆଡ଼କୁ ଅନାଇଲେ ।

ପ୍ରଭୁ ଦୟାଳ ସମ୍ମତି ସୂଚକ ମୁଣ୍ଡ ହଲାଇଲେ ।

ମୁରାରି କୌଣସି କଥା ମାନିଲା ନାହିଁ ?

ପ୍ରଭୁ ଦୟାଳ କହିଲେ—'ନା ।' ତଥାପି ଚେଷ୍ଟା ଚାଲିଛି ।

କେଦାରନାଥ ସେଠାରେ ପହଞ୍ଚିଲେ ।

ରାମସିଂ କହିଲେ – ତୁମେ ପ୍ରାଇଭେଟ ଡିଟେକ୍ଟିଭ ?

କେଦାରନାଥ କହିଲେ – 'ଆଜ୍ଞା ହଁ ।'

'ତ୍ୟାଗୀ ପାଖରେ ତୁମେ କାମ କରୁଥିଲ ?'

'ହଁ ।'

'କି କାମ ?'

'ଉପଲବ୍ଧ ତଥ୍ୟର ସନ୍ଧାନ ନେବା । ଯଦି ତାଙ୍କୁ କୌଣସି ଠାରୁ କିଛି ଟିପ୍ପଣୀ ମିଳେ, ତେବେ ସେ ନିଜ ସମ୍ବାଦପତ୍ରରେ ଛପାଇବା ପୂର୍ବରୁ ମୋ ଦ୍ଵାରା ଅନୁସନ୍ଧାନ କରାଇ ନିଅନ୍ତି, ଯଦ୍ଵାରା କି ପରେ ମାନ-ହାନୀ ମୋକଦ୍ଦମା ନ ହୁଏ ।

'ତ୍ୟାଗୀର ହତ୍ୟା କାଲି ଦିନ ପ୍ରାୟ ସାଢ଼େ ଚୋଟାଏ ବେଳେ

ହୋଇଥିଲା । ତୁମେ ପ୍ରାୟ ଦୁଇଟା ସମୟରେ ସେହି କୋଠାରୁ ବାହାରୁଥିବାର ଦେଖା ଯାଇଥିଲା । ସେଠାରେ ତୁମେ କ'ଣ କରୁଥିଲ' ?

'ସେଠାରେ ମୋର ଅଫିସ ଅଛି । ମୁଁ ମୋ ଅଫିସରେ ଥିଲି ।'

'ସେଠାରେ ତୁମେ କେତେ ସମୟ ପର୍ଯ୍ୟନ୍ତ ଥିଲ ?

'ଦଶ ମିନିଟ ।'

ସାଢେ ଗୋଟାଏ ବେଳେ ତୁମେ କେଉଁଠି ଥିଲ ?

'ବଗିଚ୍ଚାରେ ବୁଲୁଥିଲି ।'

'ପ୍ରମାଣ ଦେଇ ପାରିବ ?'

'ହଁ ପ୍ରମାଣ ଦେଇ ପାରିବି ।'

'ଦିଅ ।'

'ବର୍ତ୍ତମାନ କାହିଁକି ପ୍ରମାଣ ଦେବି । ଆପଣ ତ୍ୟାଗୀର ହତ୍ୟାରେ ମୋତେ ଅପରାଧି ବୋଲି ଗିରଫ କରନ୍ତୁ । ତାହେଲେ ମୁଁ ପ୍ରମାଣ କରିବି ଯେ ସାଢ଼େ ଗୋଟାଏ ବେଳେ ମୁଁ ଶ୍ରୀନିବାସ ହାଉସର ଆଖ ପାଖରେ ମଧ୍ୟ ନ ଥିଲି ।

'ତୁମ ସାଥିରେ କେହି ଥିଲେ ?'

'ହଁ ।'

'କିଏ ?'

ମୁଁ ତାଙ୍କର ନାମ କହିବାକୁ ଚାହେଁନାହିଁ । ସେ ଜଣେ ଇଜ୍ଜତଦାର ବବାହିତା ମହିଳା । ମୁଁ ଏଠାରେ ତାଙ୍କର ନାମ କହିବ ନାହିଁ ।

'ବାରଟା ପରେ କ'ଣ କରୁଥିଲ ?'

ମୁଁ ଅଲ୍‌କାରେ ଖାଉଥିଲି । ୧୨ଟା ପନ୍ଦର ମିନିଟ୍‌ରେ ସେଠାରୁ ଆସି ବଗିଚ୍ଚାରେ ଖରାରେ ବୁଲୁଥିଲି । ତା'ପରେ ଗ୍ଲାଲ ଗ୍ଲାଲ ଦୁଇଟା ବାଜିବାକୁ ଦଶମିନିଟ ବାକି ଥିଲା, କମର୍ସିଆଲଷ୍ଟ୍ରିଟରେ ପହଞ୍ଚିଲି ।'

'ସେତେବେଳେ ମଧ୍ୟ ସେ ମହିଳା ତୁମ ସାଙ୍ଗରେ ଥିଲେ ?'

'ହଁ ।'

'ସୁଶୀଲ ତୁମ ଫଟୋ ଉଠାଇଲାବେଳେ ତୁମେ ଦେଖିଥିଲ ।' ପରେ ତାଙ୍କ ଅଫିସକୁ ଯାଇ ତାଙ୍କୁ ଧମକାଇ ଫଟୋ ହାସଲ କରିବାକୁ ଚେଷ୍ଟା କରିଥିଲ ?'

'ମୁଁ ଫଟୋ ହାସଲ କରିବା ପାଇଁ ଚେଷ୍ଟା କରିଥିଲି, କିନ୍ତୁ ତାଙ୍କୁ ଧମକାଇ ନ ଥିଲି । ଜଣେ ସମ୍ଭ୍ରାନ୍ତ ମହିଳାର ଇଜ୍ଜତ ବଞ୍ଚାଇବା ପାଇଁ ମୁଁ ତାଙ୍କ ନିକଟରେ ପ୍ରାର୍ଥନା କରିଥିଲି ଏବଂ ସେ ଫଟୋ ମୋତେ ଦେଇ ଦେଲେ ।

'ସୁଶୀଲ କହିଲେ— 'ତୁମେ ମିଛି କହୁଛ ।'

'ତୁମେ ଚୁପ୍ କର । ମୁଁ ତୁମ ସହିତ କଥାବାର୍ତ୍ତା କରୁନାହିଁ । ପୋଲିସ ଡ଼ାକରରେ ମୁଁ ଏଠାକୁ ଆସିଛି ।'

ସୁଶୀଲ ଚୁପ୍ ହୋଇଗଲେ ।

କେଦାରନାଥଙ୍କୁ ବିଦା କରି ଦିଆଗଲା ।

ତାପରେ ସେଠାରେ ଦମୟନ୍ତୀ ଜୋଶୀ ପହଞ୍ଚିଲେ ।

ରାମ ସିଂ କହିଲେ – ମିସେସ୍ ଜୋଶୀ, କାଲି ଆପଣ ଲଞ୍ଚ କେଉଁଠି ଖାଇଥିଲେ ?

'ଅଲକା ରେଷ୍ଟୁରେଣ୍ଟରେ ।'

'ଏକୁଟିଆ ।'

'ନାଁ, ମିଷ୍ଟର କେଦାରନାଥଙ୍କ ସାଙ୍ଗରେ ।'

'ତାପରେ ଆପଣ କ'ଣ କଲେ ?'

'ମୁଁ କେଦାରନାଥଙ୍କ ସହିତ ତାଙ୍କ ଅଫିସକୁ ଗଲି ।'

'ହ୍ୟାକ୍ସିରେ ।'

ଆଜ୍ଞା ନା । ଚାଲିଚାଲି । ଅଣ୍ଡା ଦିନରେ ଖରାରେ ଚାଲିବାକୁ ମୋତେ ଭଲ ଲାଗେ । ଆମେ ବଜାରରେ ଖରାରେ ବୁଲୁଥିଲୁ ଏବଂ ଚାଲି ଚାଲି ମିଷ୍ଟର କେଦାରନାଥଙ୍କ ଅଫିସ ପାଖକୁ ଆସିଲୁ ।

କେଦାରନାଥ ଓ ଦମୟନ୍ତୀଙ୍କ କଥାରୁ ଜଣାପଡୁଥାଏ ସତେ

ଯେପରି ସେମାନେ କ'ଣ କହିବେ ଆଗରୁ ପ୍ରାକ୍ଟିସ କରି ଆସିଛନ୍ତି ।

ରାମସିଂ ତାଙ୍କୁ ଆଉ କେତେକ ପ୍ରଶ୍ନ ମଧ୍ୟ ପଚାରିଲେ ।

ଦମୟନ୍ତୀ ଜୋଶୀଙ୍କୁ ମଧ୍ୟ ବିଦା କରି ଦିଆଗଲା ।

ରାମସିଂ ପ୍ରଭୁଦୟାଲଙ୍କୁ ପଚାରିଲେ – 'ପ୍ରକାଶ ଆସିଛି ?'

ପ୍ରଭୁଦୟାଲ କହିଲେ— 'ଦେଖୁଛି ।' ଏହା କହି ସେ ବାହାରକୁ ଉଠି ଗଲେ ।

ସୁଶୀଲ କହିଲେ— ପ୍ରକାଶ ! କେଉଁ ପ୍ରକାଶ ? ଯାହା ସହିତ ଅଚଳା ମଜୁମଦାରଙ୍କର ବିବାହ ହେବାର ଅଛି ?

ରାମ ସିଂ କହିଲେ— 'ହଁ, ସେଇ ।'

'ତାଙ୍କର ଏ ବିଷୟ ସହିତ କ ସମ୍ପର୍କ ?'

'କିଛି ସମ୍ବନ୍ଧ ଅଛି । ଚୁପ୍ ଚାପ୍ ବସି ଶୁଣ ।'

ପ୍ରଭୁଦୟାଲ ପ୍ରକାଶକୁ ନେଇ ସେଠାରେ ପହଞ୍ଚିଲେ ।

ପ୍ରକାଶକୁ ଦେଖିଲେ ଜଣାଯାଉଥିଲା ଯେ ସେ ବଡ ଖାନଦାନ୍ ଘରର ପିଲା ବୋଲି ଏବଂ ଖୁବ୍ ସୁନ୍ଦର ଯୁବକ ଥିଲା । ସେ ସୁଶୀଲଙ୍କୁ ଦେଖି ହସିଲେ । ସେ ରାମସିଂଙ୍କ ସହିତ ହାତ ମିଳାଇଲେ ଏବଂ ଗୋଟିଏ ଚେୟାରରେ ବସିଲେ ।

ରାମସିଂ ପଚାରିଲେ— ହରି ପ୍ରକାଶ ତ୍ୟାଗୀଙ୍କର ହତ୍ୟା ବିଷୟ ଆପଣ ଜାଣନ୍ତି ?

ପ୍ରକାଶ କହିଲେ— 'ମୁଁ ସମ୍ବାଦପତ୍ରରୁ ପଢିଥିଲି ।'

'ଆପଣ ତ୍ୟାଗୀଙ୍କୁ ଜାଣନ୍ତି ?'

କେବେ ଦେଖିନାହିଁ ନାଆଁଟା ଶୁଣିଛି ।'

ଆପଣ ଜାଣନ୍ତି କି ତାଙ୍କର ଅଫିସ କମର୍ସିଆଲ ଷ୍ଟ୍ରିଟର ଶ୍ରୀନିବାସ ହାଉସରେ ଅଛି ?

'ଜାଣେ ।'

ଆପଣ ସେଠାକୁ କେବେ ଯାଇଥିଲେ ?

ସୁପରିଣ୍ଟେଣ୍ଡେଣ୍ଟ ବାବୁ, ମୁଁ ଜାଣି ପାରେନି ଏ ପ୍ରକାର ପ୍ରଶ୍ନ ମୋତେ କାହିଁକି ପଚାରୁଛନ୍ତି ? ଫୋନ କରି ମୋତେ ଏଠାକୁ ଆସିବାକୁ କହିଲେ ଏବଂ ମୁଁ ଚାଲିଆସିଲି, କିନ୍ତୁ ପ୍ରଥମେ ମୋତେ ଡକାଇବାର କାରଣ କୁହନ୍ତୁ ।

ରାମସିଂ କହିଲେ— ଶୁଣନ୍ତୁ, କାଲି ଦ୍ୱିପ୍ରହରରେ ତ୍ୟାଗୀର ହତ୍ୟା ହୋଇଥିଲା ପ୍ରାୟ ସେହି ସମୟରେ ଆପଣ ସେଠାକୁ ତାଙ୍କ ଅଫିସକୁ ଯାଇଥିଲେ । ଏ ସମ୍ବନ୍ଧରେ ଆପଣଙ୍କର କିଛି କହିବାର ଅଛି ।

ସୁଶୀଲ ଚମକି ପଡ଼ିଲେ । ସେ ପ୍ରକାଶର ଉତ୍ତରକୁ ଅପେକ୍ଷା କଲେ ।

ପ୍ରକାଶ ଉତ୍ତର ଦେଲେ— 'କିଛି ନାହିଁ ।'

କିଛି ନ କହିଲେ ଚଳିବ ନାହିଁ । ଆପଣଙ୍କୁ କହୁନା କିଛି କହିବାକୁ ପଡ଼ିବ । ଯଦି ଆପଣ ତ୍ୟାଗୀର ହତ୍ୟା କରି ଥାଆନ୍ତି ତାହା ଆମକୁ ଜଣା ପଡ଼ିବ । ତାପରେ ଆପଣଙ୍କର ଧନ ସମ୍ପତ୍ତି ଆପଣଙ୍କୁ ଦଣ୍ଡରୁ ରକ୍ଷା କରି ପାରିବ ନାହିଁ । ଯଦି ଆପଣ ହତ୍ୟା ନ କରି ଥାଆନ୍ତି, ତେବେ ଜଣେ କର୍ତ୍ତବ୍ୟ ପରାୟଣ ନାଗରିକ ପରି ଅପରାଧୀକୁ ଧରିବାରେ ସାହାଯ୍ୟ କରିବା ଉଚିତ୍ ।

ପ୍ରଭୁଦୟାଲ କହିଲେ — ଆମେ ଆପଣଙ୍କର ଅଚଳା ମଜୁମଦାରଙ୍କ ବିଷୟରେ ମଧ୍ୟ ଜାଣିଛୁ ।

ପ୍ରକାଶ କହିଲେ— ତା ବିଷୟରେ ଆପଣ କ'ଣ ଜାଣନ୍ତି ?

ତ୍ୟାଗୀ ପାଖରେ ଅଚଳାର କେତେକ ଚିଠି ଓ ଫଟୋ ଥିଲା, ଯଦ୍ୱାରା କି ସେ ଅଚଳାକୁ ବ୍ଲାକମେଲ କରୁଥିଲା । ଆପଣ ଏ କଥା ଜାଣନ୍ତି ?

ପ୍ରକାଶ କୌଣସି ଉତ୍ତର ଦେଲେ ନାହିଁ ।

ରାମସିଂ କହିଲେ ସେ ଚିଠି, ସେ ଫଟୋ ବର୍ତ୍ତମାନ ଆମ ପାଖରେ

ଅଛୁ । ଯଦି ଆପଣ ଆମକୁ ସାହାଯ୍ୟ କରିବେ ଓ ପ୍ରମାଣ କରିବେ ଯେ ଆପଣ ହତ୍ୟା କରି ନାହାନ୍ତି, ତାହେଲେ ଆମେ ସେ ସବୁ ଚିଠି ଅଚଳାକୁ ଫେରାଇ ଦେବୁ, ବର୍ତ୍ତମାନ କୁହନ୍ତୁ କାଲି ଆପଣ କ'ଣ ତ୍ୟାଗୀ ଅଫିସକୁ ଯାଇଥିଲେ ?

ପ୍ରକାଶ କହିଲେ – 'ଯାଇଥିଲି ।'

'କାହିଁକି ?'

'ସେହି ବ୍ଲାକମେଲର ଠାରୁ ଚିଠି ଗୁଡ଼ିକ ଫେରାଇ ଆଣିବା ପାଇଁ ।'

'କିପରି ?'

'ତାକୁ ଧମକାଇ । ମାରପିଟ କରି କିମ୍ବା ଯେ କୌଣସି ଉପାୟରେ

'ଆପଣ କେତେବେଳେ ଯାଇଥିଲେ ?'

'ପାଖ ଦୁଇଟା ପନ୍ଦର ମିନିଟରେ ।'

ଆପଣ ସେଠାକୁ ଯାଇ କ'ଣ କଲେ ?

କରୁ ନାହିଁ । ମୁଁ ସେଠାରେ ପହଞ୍ଚିବାବେଳକୁ ସେ ମରିପଡ଼ିଥିଲେ । ସେ ଟେବୁଲ ପାଖରେ ପଡ଼ିଥିଲେ ଏବଂ ତାଙ୍କର ଗ୍ରୀବାରୁ ରକ୍ତ ବାହାରୁ ଥିଲା ।

'ତାପରେ ?'

'ତାପରେ ମୁଁ ସେଠାରୁ ଚାଲି ଆସିଲି ।'

ସେଠାରେ ଆପଣ କୌଣସି ରିଭଲଭର କିମ୍ବା ମେକଅପ୍ ବକ୍ସ ଦେଖିଥିଲେ ?

ମେକଅପ୍ ବକ୍ସ ମୁଁ ଦେଖିନାହିଁ । ରିଭଲଭର ମୁଁ ଦେଖିଥିଲି ।

'ଆପଣ ରିଭଲଭର ସେଠାରୁ ଉଠାଇ ଆଣିଥିଲେ ?'

'ନା । ମୁଁ କାହିଁକି ରିଭଲଭର ସେଠାରୁ ଆଣିବି ?

'ତା ହେଲେ ଆପଣ ଜାଣି ନ ଥିଲେ ଯେ ଆପଣଙ୍କ ପୂର୍ବରୁ ଅଚଳା ସେଠାକୁ ଯାଇଥିଲା ଏବଂ ରିଭଲଭର ସେଠାରେ ଛାଡ଼ି ଯାଇଥିଲା ?'

‘କ’ଣ କହୁଲେ ?’

ଅର୍ଥାତ୍ ହତ୍ୟା ବିଷୟରେ ଅଚଳା ଯାହା ସମ୍ବନ୍ଧ ଆପଣ ଜାଣି ନାହାନ୍ତି ?’

‘ନା ।’

‘ପ୍ରଭୁ, କହୁଦଅ ।’

କପଟ ସ୍ୱର୍ଗେ ଅଚଳା ତ୍ୟାଗୀକୁ ହତ୍ୟା କରିବା ପାଇଁ ଚେଷ୍ଟା କରିଥିଲ, ପ୍ରଭୁଦୟାଳ ପ୍ରକାଶଙ୍କୁ କହିଲେ ।

ପ୍ରଭୁଦୟାଳ କହିଲେ— ଅଚଳା ଯିବା ପରେ ଅନ୍ୟ କୌଣସି ଲୋକ ଘଟଣାସ୍ଥଳରେ ପହଞ୍ଚି ସେହି ରିଭଲଭର ଦ୍ୱାରା ତ୍ୟାଗୀକୁ ମାରି ଦେଇଥିଲା, ଯେଉଁ ରିଭଲଭର କି ଅଚଳା ସେଠାରେ ଛାଡ଼ି ଯାଇଥିଲା ।

ପ୍ରକାଶ କହିଲେ — କାଲି ସକାଳେ ତା ସହିତ ମୋର ଦେଖା ହୋଇଥିଲା । ମୋତେ ଏ ବିଷୟରେ କିଛି ଜଣା ନ ଥିଲା । ମୁଁ ଆପଣଙ୍କୁ କହିଲି ଯେ ରିଭଲଭର ସେଠାରେ ଥିଲା । ଯଦି ମୁଁ ଜାଣି ଥାଆନ୍ତି ଯେଇଟି ଅଚଳାର, ମୁଁ ନିଶ୍ଚୟ ସେଇଟିକୁ ଉଠାଇ ଆଣି ଥାଆନ୍ତି ।

ରାମସିଂ କହିଲେ - ଆପଣଙ୍କ କଥା ଅନୁସାରେ ସ୍ପଷ୍ଟ ଜଣା ପଡ଼ୁନାହିଁ ଯେ ଆପଣ ହତ୍ୟା କରି ନାହାନ୍ତି । ହୁଏତ ଆପଣ ହତ୍ୟା କରିଥିବେ ଏବଂ ରିଭଲଭର ଅନ୍ୟ କେହି ସେଠାରୁ ଉଠାଇ ନେଇଥିବେ ।

ପ୍ରକାଶ ଦୃଢ଼ତାର ସହ କହିଲେ— ‘ମୁଁ ହତ୍ୟା କରିନାହିଁ ।’

ଆମେ ଦେଖିବୁ । କିନ୍ତୁ ତଥାପି ଆପଣଙ୍କ ଉପରେ ସନ୍ଦେହ ହେଉଛି । ସେଥିପାଇଁ ଆପଣ କେଉଁଆଡେ ପଳାଇ ଯିବେନି ।’

‘ମୁଁ କାହିଁକି କୁଆଡେ ପଳାଇବି ।’

‘ବର୍ତ୍ତମାନ ଆପଣ ଯାଇ ପାରନ୍ତି ।’

ପ୍ରକାଶ ସେଠାରୁ ଉଠି ବାହାରକୁ ଗଲେ ।

ସୁନୀଲ କହିଲେ – ପ୍ରକାଶ କଥାରୁ ଆପଣଙ୍କୁ କ'ଣ ଜଣା ପଡ଼ିଲା ?

ରାମସିଂ କହିଲେ – ଆମକୁ ଅନ୍ୟ ଠାରୁ ସମ୍ବାଦ ମିଳିଥିଲା ।

ତାପରେ ଏ. କେ. ମଜୁମଦାର ସେଠାରେ ପହଞ୍ଚିଲେ ।

ସେ ସହରର ପ୍ରଭାବଶାଳୀ ବ୍ୟକ୍ତି ଥିଲେ । ତେଣୁ ରାମସିଂ ଉଠି ତାଙ୍କ ସହିତ ହାତମିଳାଇଲେ ଏବଂ ୬ଥର ତାଙ୍କର ପୋଲିସ ହେଡକ୍ୱା-ର୍ଟରକୁ ଆସିବାକୁ ପରିଶ୍ରମ କରିଥିବାରୁ କ୍ଷମା ମାଗିଲେ ।

ରାମସିଂ କହିଲେ — ଆପଣଙ୍କୁ ଯେଉଁଥିପାଇଁ ଏଠାକୁ ଆସିବାକୁ କଷ୍ଟ ଦିଆଯାଇଛି ତାହା ଆପଣଙ୍କ ସାମନାରେ ପରିଷ୍କାର ସ୍ୱବେ କହୁଛି— ଆପଣ ତ୍ୟାଗୀକୁ ଜାଣନ୍ତି ତାର ହତ୍ୟା ସଙ୍ଗେ ଆପଣଙ୍କ ଝିଅର ସମ୍ବନ୍ଧ ଆପଣ ଜାଣିଥିବେ । କିନ୍ତୁ ଆପଣଙ୍କ ଠାରୁ ଆପଣଙ୍କ ସ୍ଥିତି ବିଷୟରେ ଜାଣିବାକୁ ଚାହୁଁଛୁ । ଆମେ ଜାଣୁଛୁ ଯେ ଆପଣ ଏପରି କେତେକ କଥା ଜାଣନ୍ତି, ଯାହାକି ଏହି କେଶରେ ଆମକୁ ବହୁତ ସାହାଯ୍ୟ କରି ପାରିବ ।

ମଜୁମଦାର କହିଲେ— ମୁଁ ତ୍ୟାଗୀ ହତ୍ୟା ବିଷୟରେ କିଛି ଜାଣେ ନାହିଁ ।

ଆପଣଙ୍କ ଶିଉଲଭିଲରେ ତ୍ୟାଗୀର ହତ୍ୟା ହୋଇଛି । ଆପଣଙ୍କ ଝିଅ ତ କହିଲେ ଯେ ସେ ଶିଭଲଭିର ଆପଣଙ୍କର ବୋଲି ।

'ମୋ ଶିଭଲଭିର ମୋ ଘରେ ନାହିଁ, କିନ୍ତୁ ତା ବୋଲି ପ୍ରମାଣିତ ହେବନାହିଁ ଯେ ମୋ ଶିଭଲ୍‌ଭରରେ ହତ୍ୟା ହୋଇଛି ।

କାଲି ହତ୍ୟାର ଅଳ୍ପ ସମୟ ପରେ ସୋହନଲାଲ କୋଣ[7] ଆପଙ୍କେ ପାଖକୁ ଫୋନ କରି କହିଥିଲେ ଯେ ପୋଲିସଙ୍କର ସନ୍ଦେହ ହେଉଛି ଯେ କୌଣସି ଝିଅ ହତ୍ୟା କରିଛି । ତାପରେ ଆପଣଙ୍କ ଟେଲି-ଫୋନ ନମ୍ବରକୁ ମୁନ୍ନାସି ନାମକ ଜଣେ ଗୁଣ୍ଡା ମଧ୍ୟ ନିର୍ଦ୍ଦେଶ ପ୍ରାପ୍ତ କରିବା ପାଇଁ ଟେଲିଫୋନ୍ କରିଥିଲା ଯେ ସେ ଅନ୍ୟ ଜଣେ ସାଥୀ ସହିତ ଆସି ସୁନୀଲକୁ ହରଣଚାଲ କରି ନେଇ ଯାଉଥିଲା । କମର୍ସିଆଲ୍‌ସ୍ତ୍ରିଟରେ ସେଇଁ

ଫଟୋ ଉଠାଯାଇଥିଲା, ସେ ଗୁଡ଼ିକ ସୁନୀଲ ଠାରୁ ହାସଲ କରିବାକୁ ଚାହୁଁ-ଥିଲେ ! କାଲି ରାତିରେ ଆପଣ ନିଜ ସୁନୀଲ ପାଖକୁ ମଧ୍ୟ ସେହି ଫଟୋ ମାଗିବାକୁ ଆସିଥିଲେ । କାରଣ ସେହି ଫଟୋରେ ଆପଣଙ୍କ ଝିଅ ମଧ୍ୟ ଥିଲା ଏବଂ ସେହି ଫଟୋ ଆପଣଙ୍କ ଝିଅ ପାଇଁ ବିପଦ ହୋଇପାରେ ।

'ଏହିସବୁ ଘଟଣା ସୁନୀଲ ଠାରୁ ଜଣା ପଡ଼ୁଛି । ଏହା ମିଥ୍ୟା ମଧ୍ୟ ହୋଇପାରେ ।'

'ସବୁ କଥା କ'ଣ ମିଛ ?'

ମଜୁମଦାର ନିରୁତ୍ତର ରହିଲେ ।

ଆପଣଙ୍କ ଚୁପ ରହିବା ମଧ୍ୟ ମୋର ଉଚିତ ଉତ୍ତର । କିନ୍ତୁ ଯେଉଁ କଥା ମୁଁ ପଚାରିବାକୁ ଚାହୁଁଛି ତାହା ଅନ୍ୟ କଥା ।

'କ'ଣ ?'

ଆପଣଙ୍କୁ କିପରି ଜଣା ପଡ଼ିଲା ଯେ ସୁନୀଲ ଉଠାଇଥିବା ଫଟୋ ମଧ୍ୟରେ ଆପଣଙ୍କ ଝିଅ ମଧ୍ୟ ଅଛି ?

ମଜୁମଦାରଙ୍କ ପାଟିରୁ କଥା ବାହାରିଲା ନାହିଁ ।

ମଜୁମଦାର ବାବୁ, ଆପଣଙ୍କୁ ସବୁକଥା ପୋଲିସ ଜାଣିବା ପୂର୍ବରୁ ଜଣାଥିଲା, ନହେଲେ କାଲି ଦ୍ୱିପ୍ରହରରେ ଆପଣ ସୋହନଲାଲ କୋଶୀଙ୍କୁ ସବୁ କଥା ଜାଣିବା ପାଇଁ ତ୍ୟାଗୀ ଅଫିସକୁ ପଠାଇ ନଥାନ୍ତେ । ଏଥିରୁ ଜଣାପଡ଼ୁଛି ମଜୁମଦାରବାବୁ, ହତ୍ୟା ବିଷୟରେ ଆପଣ ବହୁତ ଆଗରୁ ଜାଣିଥିଲେ ଏବଂ କିପରି ଆପଣ ଜାଣିଲେ ସେ କଥା କହିବାକୁ ଆପଣଙ୍କର ଅସୁବିଧା ହୋଇପାରେ ।

'ବର୍ତ୍ତମାନ କ'ଣ ମୁଁ ଅସୁବିଧାରେ ପଡ଼ିବି ?'

ବର୍ତ୍ତମାନ ନୁହେଁ । ବର୍ତ୍ତମାନ ତ ମୁଁ ଆପଣଙ୍କୁ କାଲି ସବୁ କଥା ବୁଝାଇ କହିଦେଲି ।

'ମୋତେ ଆଉ ଆପଣ କ'ଣ ପଚାରିବାକୁ ଚାହାନ୍ତି ?'

'ଆପଣ ଆମକୁ କିଛି କହିବେ କି ?'

'କହିବାର ମୋ ପାଖରେ କିଛି ନାହିଁ ।'

ଆପଣଙ୍କ ଖୁସି । କିନ୍ତୁ ଏ ଘଟଣା ନିକଟ ଭବିଷ୍ୟତରେ ଆପଣଙ୍କୁ ଅସୁବିଧାରେ ପକାଇ ପାରେ ।

'ଆଇ ଉଇଲ ଟେକ୍ ଦ୍ୟାଟ୍ ବ୍ରିଜ୍ ହ୍ୱେନ ଆଇ ଗେଟ୍ ଇଟ୍'— ମଜୁମଦାର କହିଲେ— ମେ ଆଇଁ ବ ଏଭ୍ରିବଡିଜ୍ ନ ଓ।

ରାମସିଂ ସହମତରେ ମୁଣ୍ଡ ହଲାଇଲେ ।

ମଜୁମଦାର ଟିକଏ ଠିଆହେଲେ । ସେ ଆଶା କରୁଥିଲେ ବୋଧହୁଏ ରାମସିଂ ଉଠି ତାଙ୍କ ସହ ହାତ ମିଳାଇବେ, କିମ୍ବା ତାଙ୍କୁ ଦୁଆରମୁହଁ ପର୍ଯ୍ୟନ୍ତ ଛାଡ଼ିବାକୁ ଆସିବେ । କିଛି ଉପାୟ ନ ଦେଖି ବାହାରକୁ ଚାଲି ଆସିଲେ ।

ରାମସିଂ ସିଗାରେଟ୍ ଧୂଆଁ ଛାଡୁଥାଆନ୍ତି ।

କିଛି ସମୟ ପ୍ରତୀକ୍ଷା ପରେ ସୁନୀଲ ଅନୁଭବ କଲେ ଯେ ଆଉ କେହି ଆସିବାର ନାହିଁ ।

ସୁନୀଲ କହିଲେ— ଆଶ୍ଚର୍ଯ୍ୟ କଥା । ଏତେ ଲୋକଙ୍କୁ ଏଠାକୁ ଡକାଗଲା, କିନ୍ତୁ ଠାକୁର ହତ୍ୟା ମାମଲା କାହାରିକୁ ପଚରା ଗଲାନାହିଁ ।

ପ୍ରଭୁଦୟାଳ କହିଲେ – ତାହା ଗୋଟିଏ ଅନ୍ୟ କେଶ ।

ମୁଁ ଜାଣି ପାରୁନ । ଠାକୁରଙ୍କ ହତ୍ୟା କ'ଣ ସେଇ ଫଟୋ ପାଇଁ ହୋଇନଥିଲା, ଯେଉଁଟାକ ମୁଁ କମର୍ସିଆଲଷ୍ଟ୍ରିଟରେ ଉଠାଇ ଥିଲି ? ଯେଉଁମାନେ ସେଇ ଫଟୋରେ ଥିଲେ ସେମାନେ କ'ଣ ତ୍ୟାଗୀର ହତ୍ୟାକାଣ୍ଡ ହୋଇଥିବେ ବୋଲି ସନ୍ଦେହ କରାଯାଇ ପାରିବନି ? ଦୁଇଟି ହତ୍ୟା ଜଣକ ଦ୍ୱାରା ହୋଇଥିବ ବୋଲି ମୋତେ ଜଣା ପଡୁଛି ।

ହଠାତ୍ ରାମସିଂ କହିଲେ— ତାହେଲେ କେଦାର ନାଥଙ୍କୁ ଭଲ ଭାବେ ଚେକ୍ କରାଯାଉ ।

ପ୍ରଭୁ ଦୟାଳ କହିଲେ— Yes Sir ।

ରମସିଂ ହୁକୁମ ଦେଲେ— ତ୍ୟାଗୀର ଯେଉଁଠି ହତ୍ୟା ହୋଇଥିଲା, ମୋତେ ସେଇ ଜାଗା ଦେଖାଅ ।

ପ୍ରଭୁଦୟାଳ କହିଲେ — ନିଶ୍ଚୟ ।

ସୁନୀଲ କହିଲେ - ମୁଁ ଆପଣମାନଙ୍କ ସାଙ୍ଗରେ ଯାଇପାରେକି ?

ରମସିଂ କହିଲେ— 'ତୁମେ ସେଠାରେ ଯାଇ କ'ଣ କରିବ ?'

'ମୁଁ ସେଠାରେ ଚୁପ୍‌ଚାପ ଠିଆ ହୋଇ ରହିବି ।'

'ଠିକ୍ ଅଛି ଚାଲ ।'

'ଥ୍ୟାଙ୍କ୍ୟୁ ।'

ପ୍ରଭୁଦୟାଳ ରାଗରେ ସୁନୀଲ ଆଡ଼କୁ ଅନାଇଥାନ୍ତି ।

***

ସେମାନେ ଶ୍ରୀନିବାସ ହାଉସରେ ପହଞ୍ଚିଲେ ।

କିମାଣୀ ସେଠାକୁ ଆସି ନ ଥିଲେ । ସେ ପୋଲିସ ହେଡ଼କ୍ୱାର୍ଟରରୁ 'ବ୍ଲାଷ୍ଟ' ଅଫିସକୁ ଚାଲିଯାଇଥିଲେ ।

ପ୍ରଭୁଦୟାଳ ପକେଟରୁ ଗୋଟିଏ ଚାବି ନେଇ ବାହାର କଲେ ଓ ତ୍ୟାଗୀ ଅଫିସର ବାହାର ପଟେ ପଡ଼ିଥିବା ତାଲା ଖୋଲିଲେ ।

ସୁନୀଲ କହିଲେ— ଏ ଚାବି କେଉଁଠୁ ଆସିଲା ? କବାଟ ତ ଖୋଲା ଥିଲା ।

ପ୍ରଭୁଦୟାଳ କହିଲେ— ଏ ଚାବି ତ୍ୟାଗୀର ପକେଟରୁ ମିଳିଥିଲା । କେହି ଯେପରି ଅନଧିକୃତ ଭାବେ ଏଠାକୁ ପଶି ନ ପାରିବେ, ସେଥିପାଇଁ ମୁଁ ତାଲା ବନ୍ଦ କରି ଦେଇଛି ।

ସୁନୀଲ ଉପହାସ ପୂର୍ଣ୍ଣ ସ୍ୱରରେ କହିଲେ— 'ଯେପରି କି ମୁଁ ।'

ପ୍ରଭୁଦୟାଳ କଠୋର ସ୍ୱରରେ କହିଲେ - ହଁ ଯେପରି ତୁମେ ।'

ସୁନୀଲ ଚୁପ୍ ହୋଇଗଲେ ।

ସେମାନେ ଭିତରକୁ ଗଲେ ।

ହେଡ୍‌କନ୍‌ଷ୍ଟବଲ ରାମସିଂଙ୍କୁ ସବୁ କଥା ବୁଝାଇ ଦେଲେ ଯେ କେଉଁଠି ଶବ ପଡ଼ିଥିଲା ଏବଂ ସେଠାରୁ କ'ଣ ଜବତ କରାଯାଇଛି ।

ରବରଜେଣ୍ଟା କବାଟରେ ଲାଗିଥିବା ତାଲାରେ ଝୁଲୁଥିଲା । ସୁନୀଲ ସେଠାରୁ ବାହାରକର ରବର ଜେଣ୍ଟା ହାତରେ ଧରିଲେ । ସେ ଜେଣ୍ଟାରେ ୮ଟି ଚାବି ଥିଲା । କିଛି ସମୟ ପର୍ଯ୍ୟନ୍ତ ସେ ତାକୁ ଏପଟ ସେପଟ କରି ଦେଖିଲେ । ତାପରେ ଅଫିସ ସାମନାରେ ବନ୍ଦ ହୋଇଥିବା କବାଟ ପାଖରେ ପହଞ୍ଚିଲେ ।

ସେଥିରେ ଥିବା ଗୋଟିଏ ଚାବିରେ ସେ ରୁମ୍‌ର ତାଲାଖୋଲିଗଲା ।

ସୁନୀଲ ରାମସିଂଙ୍କ ଆଡକୁ ଅନାଇ କହିଲେ ଏ ଚାବିଜେଣ୍ଟାରେ ଥିବା ଗୋଟିଏ ଚାବିରେ ଏହି ତାଲା ଖୋଲିଗଲା ।

ହେଡ୍‌କନ୍‌ଷ୍ଟବଲ କହିଲେ— ଆରେ, ତୁମେ ଏ କ'ଣ କରୁଛ ?

ରାମସିଂ ହେଡ୍‌କନ୍‌ଷ୍ଟବଲଙ୍କୁ ଇସାରା ଦେଇ ଚୁପ୍ ରହିବାକୁ କହି ସୁନୀଲକୁ ସମ୍ବୋଧନ କରି କହିଲେ— ଏଥିରୁ କ'ଣ ପ୍ରମାଣ ମିଳୁଛି ।

ସୁନୀଲ କହିଲା— କିଛି ନାହିଁ । କିନ୍ତୁ ଖାଲି ଅଫିସ ସହିତ କେଦାରନାଥ ଅଫିସକୁ ମିଶାଉଥିବା ତାଲାର ଚାବି ଯଦି ଏହି ଜେଣ୍ଟାରେ ଥିବ, ତେବେ ବହୁତ କିଛି ପ୍ରମାଣ ମିଳିବ ।

'ଚେଷ୍ଟା କର ।'

ରାମସିଂ, ହେଡ୍‌କନ୍‌ଷ୍ଟବଲ ଓ ସୁନୀଲ ଖାଲି ଅଫିସରେ ପହଞ୍ଚିଲେ । ସୁନୀଲ କେଦାରନାଥଙ୍କ ଅଫିସ ସହିତ ସଂଯୁକ୍ତ ଥିବା ଦୁଆର ମୁହଁରେ ପହଞ୍ଚିଲେ ଏବଂ ତାଙ୍କର ତାଲାରେ ଚାବି ଜେଣ୍ଟା ମିଶାଇ ଠିକ ଜାଞ୍ଚି କରି ଦେଖିବାକୁ ଲାଗିଲେ ।

ସେ ତାଲା ମଧ୍ୟ ଖୋଲିଗଲା । ସେମାନେ କେଦାରନାଥଙ୍କ ଅଫିସରେ ପହଞ୍ଚିଲେ ।

ସୁଶୀଲ କହିଲେ – ମୋର ପୂରା ବିଶ୍ୱାସ ଯେ ଏହି ସବୁ କବାଟର ତାଲାର ଚାବି କେଦାରନାଥଙ୍କ ପାଖରେ ନିଶ୍ଚୟ ଥିବ ।

ତୁମେ କହିବାକୁ ଚାହୁଁଛ ଯେ ତ୍ୟାଗୀ ଓ କେଦାରନାଥଙ୍କର କି ସମ୍ବନ୍ଧ ଅଛି ? ରାମସିଂ କହିଲେ ।

ନିଶ୍ଚୟ ତ୍ୟାଗୀର ବ୍ଲାକମେଲିଂ ଧନ୍ଦାରେ କେଦାରନାଥ ମଧ୍ୟ ପାର୍ଟନର ଥିବ । ତା ପର ଜଣେ ପ୍ରାଇଭେଟ ଡିଟେକ୍ଟିଭ ଠାରୁ ଭଲ ପାର୍ଟନର ଆଉ ତ୍ୟାଗୀକୁ କେଉଁଠୁ ମିଳିବ ? କେଦାରନାଥ ବ୍ଲାକ ମେଲିଂର ଖବର ଆଣୁଥିବ ଏବଂ ତ୍ୟାଗୀ ନିଜ ସମ୍ବାଦପତ୍ର ମାଧ୍ୟମରେ ସେହି ସମ୍ବାଦକୁ ଠିକ୍ ଲୋକର କାନ ପର୍ଯ୍ୟନ୍ତ ପହଞ୍ଚାଇ ବ୍ଲାକମେଲିଂ କରୁଥିବ ।

ହୁଁ ! ତୁମେ କପରି ଜାଣିଲ ଯେ ଏହି ଚାବି ନେଳୀରେ ଥିବା କେଉଁଡିକ ଚାବିରେ ଏହି କବାଟ ସବୁ ଖୋଲିହେବ ?

ମୁଁ ଯେତେବେଳେ ପ୍ରଥମେ ଏଠାକୁ ଆସିଥିଲି ଖୁବ୍ ଧୀର ସ୍ୱରରେ ଖଟ୍ ଖଟ୍ ଶବ୍ଦ ଶୁଣିଥିଲି ଯେପରିକି କେହି ଧୀର ସ୍ୱରେ କବାଟ ବନ୍ଦ କରୁଛି । ଗଳି ପାଖରେ ଥିବା କବାଟ ସେପରି ଶବ୍ଦ ହୋଇ ନ ଥିବ, କାରଣ ସାଙ୍ଗେ ସାଙ୍ଗେ ମୁଁ ବାହାରକୁ ଅନାଇ ଫେରିଥିଲି ଏବଂ କାହାରିକୁ ଦେଖି ପାରି ନ ଥିଲି । ମଝିରେ ଥିବା ଖାଲି ଅଫିସର କବାଟରେ ତାଲା ବନ୍ଦ ଥିଲା ତେଣୁ ତାହା ମଧ୍ୟ ଖୋଲିବା କଥା ନୁହେଁ । ବର୍ତ୍ତମାନ ତ୍ୟାଗୀର ଚାବି ନେଳୀରେ ଏତେ ଚାବି ଦେଖି ମୋର ମନେ ପଡ଼ିଲା । ବୋଧହୁଏ ଏଥିରେ ସବୁ କବାଟର ଚାବି ଥିବ । ଯଦି ଚୁପ୍ ଚାପ କେଦାରନାଥଙ୍କ ଅଫିସକୁ ଯିବାପାଇଁ ତ୍ୟାଗୀ ପାଖରେ ଚାବି ଥିଲା, ତେବେ ସେହିପରି ଚାବି କେଦାରନାଥଙ୍କ ପାଖରେ ମଧ୍ୟ ନିଶ୍ଚୟ ଥିବ ।

ଅର୍ଥାତ୍ ଯେତେବେଳେ ତୁମେ ପ୍ରଥମଥର ଏଠାକୁ ଆସିଥିଲି ଏହି ଖାଲି ଅଫିସର କବାଟ ଖୋଲି କେଦାରନାଥ ତୁମକୁ ଦେଖିଥିଲେ ?

କେଦାରନାଥ ନା ଅନ୍ୟ କେହ୍ବ ! ମୋର ଜଣେ ମନ ଏଣ୍ଡା ଯେ ସେ କେଦାରନାଥ ଥିଲେ ! ରାମସିଂ ! ପ୍ରକାଶ ଏଠାକୁ ଆସିବା ଖବର ପୋଲିସ କପରି ଜାଣିଲ ?

ଗୋଟିଏ ଅଜଣା ଟେଲିଫୋନ ଦ୍ୱାରା ।

ପ୍ରଦ୍ୟୁମ୍ନଦୟାଲ, ମୁଁ ଏଠାକୁ ଚୂପ୍‌ଚାପ ଆସିଥିବା ଖବର ତୁମକୁ କଏ ଦେଲ ?

ପ୍ରଦ୍ୟୁମ୍ନଦୟାଲ କହିଲେ—ଗୋଟିଏ ଟେଲିଫୋନ ଦ୍ୱାରା ।

ଏକ୍‌ଜାକ୍‌ଲି । ଦୁଇଟି ଖବର ଠିକ୍ । କେଦାରନାଥ ନିଶ୍ଚୟ ମୋତେ ଓ ପ୍ରକାଶକୁ ଏଠାରେ ଦେଖିଥିବ । କାଲି ଯେତେବେଳେ ମୋତେ ଫଟୋ ମାଗିବା ପାଇଁ ସେ ଅଫିସକୁ ଆସିଥିଲି । କେଦାରନାଥ ମୋତେ ଧମକାଇ କହିଥିଲ ଯେ ତାକୁ ଜଣାଥିଲ ଯେ ମୁଁ ତ୍ୟାଗୀ ଅଫିସରେ କ'ଣ କରୁଥିଲି ଏବଂ ସେ କହୁଥିଲ ଯେ ମୋ ନାମରେ ସମସ୍ତ କଥା ପୋଲିସକୁ କହିଦେବ । ମୋତେ ନ ଦେଖିଥିଲେ ସେ କପରି ଜାଣିପାରନ୍ତା ଯେ ମୁଁ କଅଣ କରୁଥିଲି ।

ରାମସିଂ କହିଲେ—କିନ୍ତୁ ସେ କାହିଁକି ଏପରି କଲା ? ସେ ତୁମ ନାମରେ ଓ ପ୍ରକାଶ ନାମରେ ପୋଲିସକୁ କାହିଁକି ସଙ୍କେତ ଦେଲା ?

କାରଣ ଆମ୍ଭ ଦୁଇଜଣ ହତ୍ୟା କରିଥିବା ସନ୍ଦେହରେ ଜଡ଼ିତ ହେଲେ କେଶ୍ ଛଳିଗଡ଼ିବ । ଯେତେ ବେଶୀ ମର୍ଡ଼ର ସସ୍‌ପେକ୍ଟ ପୋଲିସ ଆଖିକୁ ଆସିବ, ପୋଲିସ ତା' ଆଡ଼କୁ ସେତେ କମ୍ ଧ୍ୟାନ ଦେବେ ।

ଯେତେବେଳ ପର୍ଯ୍ୟନ୍ତ ଆମେ ଦମୟନ୍ତୀ ଜୋଶୀ ଠାରୁ ସମସ୍ତ ଘଟଣା ନ ପାଉଛୁ ଆମେ ତା ବିରୁଦ୍ଧରେ କିଛି ପଦକ୍ଷେପ ନେଇ ପାରିବୁ ନାହିଁ ।

ସେ ତ୍ୟାଗୀକୁ ହତ୍ୟା କରିଛି କି ନାହିଁ ମୁଁ ଜାଣେ ନାହିଁ । କିନ୍ତୁ ସେ ହତ୍ୟା ସମୟରେ ଏଠାରେ ଉପସ୍ଥିତ ଥିଲି ।

ରାମସିଂ କହିଲେ – ହଁ । ପ୍ରଭୁଦୟାଳ, ତୁମେ ସେହି ସ୍ତ୍ରୀଲୋକ ସହିତ ପୁଣି କଥାବାର୍ତ୍ତା କର ଏବଂ କେଦାରନାଥଙ୍କୁ ମଧ୍ୟ ଧରି ଆଣ ।

Yes Sir ! – ପ୍ରଭୁଦୟାଳ କହିଲେ ।

ସେହି ଗଳିର ଦୁଆର ମୁହଁରେ ଧୀର ସ୍ୱରରେ ଶବ୍ଦ ଶୁଣାଗଲା ।

ସମସ୍ତେ ନୀରବ ହୋଇ କାନ ପାରି ଶୁଣିଲେ ।

ତାଲାରେ ଗୁଚ୍ଛ ଭର୍ତ୍ତି ହେବାର ଶବ୍ଦ ହେଲା, ପୁଣି ହ୍ୟାଣ୍ଡେଲ ବୁଲାଇଲେ କିନ୍ତୁ ତାଲା ଖୋଲିଲା ନାହିଁ ।

ପ୍ରଭୁଦୟାଳ ପାଦ ଚପି ଚପି ପାଖ ଦୁଆର ମୁହଁ ଆଡ଼କୁ ଗଲେ ।

ଏଥର ବୋଧହୁଏ ତାଲାରେ ଅନ୍ୟ କୌଣସି ଗୁଚ୍ଛ ଭର୍ତ୍ତି କରାଗଲା । ପୁଣି ଖଟ୍‌ଖଟ୍ ଶବ୍ଦ ଶୁଭିଲା, କିନ୍ତୁ ତାଲା ଖୋଲିଲା ନାହିଁ ।

ସୁନୀଲ ଏବଂ ରାମସିଂ ମଧ୍ୟ ପ୍ରଭୁଦୟାଳଙ୍କ ପଛରେ ଗଲେ ।

ପ୍ରଭୁଦୟାଳ ଗୋଟିଏ ଧକ୍କାରେ ଡାକ୍ତରୀ ଅଫିସର ଗଳିପଟ କବାଟ ଖୋଲିଲେ ।

ବାହାର ଗଳିରେ କେଦାରନାଥ ଅଫିସ ସାମନାରେ ହାତରେ ଗୁଚ୍ଛ ଧରି ଗୁଚ୍ଛକୁ ତାଲାରେ ଲଗାଇଥିବା ଅବସ୍ଥାରେ ଜୋଶୀ ଠିଆ ହୋଇଥିଲେ ।

ଏମାନଙ୍କୁ ଦେଖି ସେ ଡରିଗଲେ ।

ପ୍ରଭୁଦୟାଳ ଯାଇ ତାଙ୍କ ପାଖରେ ପହଞ୍ଚିଲେ ।

ପ୍ରଭୁଦୟାଳ କର୍କଶ ସ୍ୱରରେ କହିଲେ—ଏ କ'ଣ କରୁଛ ?

ମୋହନଲାଲ ଜୋଶୀ ଗମ୍ଭୀର ସ୍ୱରରେ କହିଲେ – କ'ଣ କରିବ ? ଠିଆ ହୋଇଛୁ ।

'ତୁମେ ଏହି ତାଲା ଖୋଲିବାକୁ ଚେଷ୍ଟା କରୁଥିଲ ।'

କିଏ କହୁଛି ?

ମୁଁ କହୁଛି । ମୁଁ ଘର ଭିତରୁ ଦେଖିଛି ତୁମେ ତାଲାରେ ଗୁଚ୍ଛ

ଲଗାଉଥିଲ ।

କପଟ ଦେଖିଲେ ? କବାଟ କ'ଣ କାଚରେ ତିଆରି ।

ବକ୍‌ବକ୍‌ ହୁଅ ନାହିଁ । ଖବର ବର୍ତ୍ତମାନ ମଧ୍ୟ ତୁମର ହାତରେ ଅଛି । ତୁମେ ଅନଧିକୃତ ଭାବେ କେଦାରନାଥ ଅଫିସରେ ପଶିବାକୁ ଯାଉଥିଲ ।

ଖବର ମୋ ହାତରେ ଅଛି ସତ । କିନ୍ତୁ ମୁଁ ତାହା ବ୍ୟବହାର କରି ନାହିଁ । ମୁଁ କେବଳ ଗଳିପାଖ କବାଟ ପାଖରେ ଠିଆ ହୋଇଥିଲି ।

'ମିଛ କୁହ ନାହିଁ ।'

ଆପଣମାନେ କେଦାରନାଥ ଅଫିସ ଭିତରେ ପଶି କ'ଣ କରୁଥିଲେ ? କୋଣୀ କହିଲେ—ଆପଣଙ୍କ ପାଖରେ ଓ୍ୱାରେଣ୍ଟ ଅଛି ?

ରାମସିଂ ଆଗକୁ ଆସିଲେ ସେ କୋଣୀର ଦୁଇହାତକୁ ଜୋରରେ ଭୂଲଇ ଧରି ପିଠିକୁ ଗୋଟାଏ ଧକ୍‌କା ମାରିଲେ ସେ କାନ୍ଥରେ ବାଡେଇ ହୋଇଗଲି ।

ବେଶୀ ହୁସିଆର ଦେଖେଇବାକୁ ଚେଷ୍ଟା କଲେ ତୋତେ ମାରି ମାରି ହାଡ଼ଗୋଡ଼ ଭାଙ୍ଗି ଦେବି । ରାମସିଂ ରାଗି କରି କହିଲେ ।

କୋଣୀ କହିଲେ—'ଡପ୍‌ ଇନ୍‌ ପୋଲିସ ବ୍ରୁଟାଲିଟି –' ଆପଣ ଜଣେ ସିନିଅର ପୋଲିସ ଅଫିସର ହୋଇ ମୋତେ ଏପରି ବ୍ୟବହାର କରୁଛନ୍ତି ।

ତା'ର ହାତ ରାମସିଂଙ୍କ ହାତରେ ଥିଲା । ରାମସିଂ ପୁଣି ଗୋଟାଏ ଧକ୍‌କା ମାରିଲେ ।

କୋଣୀ ଦେହରେ ଟିକିଏ ହେଲେ ବଳ ନଥାଏ, ସେ ଉଦ୍‌ଘାତ ହୋଇ ଯାଇଥାନ୍ତି ।

ରାମସିଂ କହିଲେ – ସେ ଖବର ସବୁ ମୋତେ ଦେଇ ଦେ ।

କୋଣୀ ଖବର ନେଡ଼ା ଦେଲା ।

ରାମସିଂ ରୁଖ ନେଲେ ।

ତ୍ରିଭୁବନଦୟାଲ ଜୋରରେ ତା'ର ହାତ ଧରିଲେ ।

ମୋହନଲାଲ ପାଟି କରି କହିଲା—ଅଜ୍ଞା, ମୁଁ କ'ଣ ଭିତରେ ଥିଲି ।'

'ସଟ୍ ଅପ୍ ।'

ତ୍ରିଭୁବନଦୟାଲ ତାଙ୍କୁ ତଳକୁ ନେଇଗଲେ ।

ରାମସିଂ କହିଲେ—ଏ ଶଳା ବିନା ମାଡ଼ରେ କଥା ମାନିବ ନାହିଁ ।

ସୁନୀଲ ଚୁପ୍ ରହିଲେ ।

'କିନ୍ତୁ ଆମେ ମଧ୍ୟ ଚିକିଏ ତରତର ହେଲୁ । ସ୍ୱାଙ୍କୁ ତାଲା ଖୋଲି ଭିତରେ ପଶିବାକୁ ଦେବା ଆମର ଉଚିତ୍ ଥିଲା ।

'ହଁ' ।

ସେହି ସମୟରେ ଥ୍ୟାଗୀ ଅଫିସରେ ଟେଲିଫୋନ୍ ଘଣ୍ଟା ବାଜି ଉଠିଲା ।

ତ୍ରିଭୁବନଦୟାଲ ସେହି ସମୟରେ ଲିଫ୍ଟ ପାଖରେ ଥିଲେ ।

ସେ କହିଲେ - ଅଜ୍ଞା ମୋର ଫୋନ୍ ଥିବ । ହେଡ୍‌କ୍ୱାର୍ଟରରେ କହି ଆସିଥିଲି ଯେ ମୁଁ ଥ୍ୟାଗୀ ଅଫିସକୁ ଯାଉଛି ।

ରାମସିଂ କହିଲେ— 'ତୁମେ ଚାଲ— ମୁଁ ଫୋନ୍ ଶୁଣୁଛି ।'

କୌଣସି ସହିତ ତ୍ରିଭୁବନଦୟାଲ ଲିଫ୍ଟକୁ ଆସିଲେ । ଲିଫ୍ଟ ଦ୍ୱାର ତଳକୁ ଗଲା ।

ରାମସିଂ ଥ୍ୟାଗୀ ଅଫିସରେ ପହଞ୍ଚିଲେ ।

ତାଙ୍କ ପଛେ ପଛେ ସୁନୀଲ ଗଲେ ।

ରାମସିଂ ଫୋନ୍ ଶୁଣିଲେ । ଟେଲିଫୋନ ଶୁଣି ସେ ଚମତ୍କୃତଙ୍କ ପରି ଜଣାଗଲା । ସେ ରସିଭର ରଖିଦେଲେ ।

ସୁନୀଲ ପଚାରିଲେ 'କ'ଣ ହେଲା ।'

ରାମସିଂ କହିଲେ — ଆଉ ଗୋଟିଏ ହତ୍ୟା । ୨୪ ଘଣ୍ଟା ମଧ୍ୟରେ ତିନୋଟି ହତ୍ୟା ହୋଇଗଲା । କମିଶନର ବାବୁ ଆମକୁ କ'ଣ କହିବେ ?

କିଏ ମରିଗଲା ?

ଜଣା ପଡ଼ିବ । ରାସ୍ତା ସେପଟକୁ ଯିବାକୁ ପଡ଼ିବ ।

ରାମସିଂ ଯେଉଁ କବାଟ ଖୋଲିଥିଲେ, ସବୁ ଗୁଡ଼ିକ ତାଲା ବନ୍ଦ କରି ସେଠାରୁ ଫେରିଲେ ।

***

ଯେଉଁ କୋଠାରେ ହତ୍ୟା ହୋଇଥିଲା, ତା ସାମନାରେ ଦୁଇଟି ପୋଲିସ ଗାଡ଼ି ଆଗରୁ ଠିଆ ହୋଇଥିଲା ।

ସୁଶୀଲ ଦେଖିଲେ ତାହା ସେଇ ହୋଟେଲ ଥିଲା, ଯେଉଁ ଠାରୁ ସେ ଜୀବନ ମାଳହୋତ୍ରା ଓ ରେଖାଙ୍କୁ ବାହାରିବାର ଦେଖିଥିଲେ ।

ଆଁ ୟ ପ୍ରେସ ରିପୋର୍ଟର ମଧ୍ୟ ସେଠାରେ ପହଞ୍ଚି ସାରିଥିଲେ । ବୋଧହୁଏ ପୋଲିସ କଣ୍ଟ୍ରୋଲ୍ ରୁମ ଦ୍ୱାରା ସେ ହତ୍ୟାର ଖବର ପାଇଥିଲେ ।

ସୁଶୀଲର ଏହା ଏକ ସୁଯୋଗ ଥିଲା । ରାମସିଂ ଥିବାରୁ ଦ୍ରୋଣଦୟାଲ ତାଙ୍କୁ କିଛି କହି ପାରୁ ନ ଥିଲେ ।

ସେମାନେ ପ୍ରଥମ ମହଲାର ଫ୍ଲାଟରେ ପହଞ୍ଚିଲେ ।

ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ଙ୍କୁ ଆସୁଥିବାର ଦେଖି ଉପସ୍ଥିତ ପୋଲିସମାନେ ଘୁଞ୍ଚିଗଲେ ।

ତଳେ ପଡ଼ିଥିବା ଶବଟି ପ୍ୟାରେଲାଲ ନମ୍ବର ଦୁଇ ଥିଲା । ସୁଶୀଲ ଦୁଇ ତିନି ଦିନ ପୂର୍ବରୁ ତାଙ୍କୁ ଯେଉଁ ସୁଟପିନ୍ଧି ଥିବାର ଦେଖିଥିଲା ସେ ସେତେବେଳେ ମଧ୍ୟ ସେଇ ସୁଟ ପିନ୍ଧି ଥିଲା, ତାର ଚଷମା ନାକ ପାଖରୁ ଟିକିଏ ଘୁଞ୍ଚି ଯାଇଥିଲା । ତା ଗ୍ରୀବରେ ଗୁଳି ବାଜିଥିବା ଜଣା

ପଡ଼ୁଥିଲା । ରକ୍ତ ବୋହି ଶୁଖି ଯାଇଥିଲା, ସମ୍ଭବତଃ ତାର ମୃତ୍ୟୁ ଅନେକ ପୂର୍ବରୁ ହୋଇଛି ବୋଲି ଜଣା ପଡ଼ୁଥିଲା ।

ଶବ ପାଖରେ ଗୋଟିଏ ରିଭଲଭର ପଡ଼ିଥିଲା ।

ଜଣେ ସବ୍‌ଇନସ୍‌ପେକ୍ଟର କହିବାକୁ ଆରମ୍ଭ କଲେ— ଅଞ୍ଚଳ ଜଣାପଡ଼ିଛି ଯେ ଏହି ଲୋକ ଏହି ଫ୍ଲାଟରେ ଏକା ରହୁଥିଲା । ଏହାର ନାମ ରମେଶ କୁମାର ।

ସୁଶୀଲ କହିଲେ – ନାଁ 'ନାରାୟଣ କୁମାର ।'

ରାମସିଂ ସୁଶୀଲଙ୍କୁ ପଚାରିଲେ— ତୁମେ ଏ ଲୋକଙ୍କୁ ଜାଣ ?

ସୁଶୀଲ କହିଲା – ହଁ, ଏ ନ୍ୟାଶନାଲ ବ୍ୟାଙ୍କରୁ ଚୋରି କରି ପଳାଇ ଆସିଥିଲା, ଏହାର ନାମ ନାରାୟଣ କୁମାର ପ୍ରଦ୍ୟୁମ୍ନଦୟାଳଙ୍କୁ ସୁଶୀଲ କହିଲେ – ଏ ସେଇ ଲୋକ ଯେ କି ମୋ ଫ୍ଲାଟରେ ମୋତେ ରିଭଲଭର ଦେଖାଇ ଧମକାଇ ମୋ ଠାରୁ ସେହି ଫଟୋ ନେବାକୁ ଚେଷ୍ଟା କରୁଥିଲା । ରିଭଲଭରରେ ଥିବା ଅଙ୍ଗୁଠିର ଚିହ୍ନ ଏହାର । ଲୋକେ ଭାବୁଥିଲେ ଯେ ସମୁଦ୍ରରେ ବୁଡ଼ି ମରଯାଇଛି । ତ୍ୟାଗୀର ଟାଇପ ରାଇଟର ମେସିନର ଯେଉଁ କାଗଜ ମିଳିଥିଲା । ସେଥିରେ ଏହି କଥା ଟାଇପ କରାଯାଇଥିଲା ଯେ ନାରାୟଣ କୁମାର ମରିନାହିଁ ଏହି ସହରରେ ଜୀବିତ ଅବସ୍ଥାରେ ଅଛି ।

'କିନ୍ତୁ ସେଇ କ୍ୟାସିୟର ତ ପତଳା ଲୋକ ଥିଲେ ।' ପ୍ରଦ୍ୟୁମ୍ନଦୟାଳ କହିଲେ— ତାର ଛୋଟ ଛୋଟ ବାଳ ଥିଲା । ସେ ମଧ୍ୟ ଚଷମା ପିନ୍ଧୁନ ଥିଲା ।

ବାଳ ବଢାଯାଇ ପାରେ । ଜଣ ରଖାଯାଇ ପାରେ । ଖାଇ ପିଇ ମୋଟା ମଧ୍ୟ ହୋଇପାରେ ଏବଂ ଯେତେବେଳେ ଇଚ୍ଛା ଚଷମା ମଧ୍ୟ ଲଗାଇ ପାରେ ।

ରାମସିଂ କହିଲେ— କେହି ତୁମ୍‌କୁ ଶାନତଲାମ କରିଛନ୍ତି ?

ଅଣ୍ଣା କହିଁ— ବର୍ତ୍ତମାନ ତ କେବଳ ଶବ ଦେଖାଯାଉଛି ।

'ଆରେ ଖାନ୍ ତଲ୍ଲସ କର ।'

ଖାନତଲ୍ଲସ କରିଗଲା ।

ଦୁଇଟି ସୁଟକେଶରୁ ବ୍ୟାଙ୍କରୁ ଲୁଟିବା ଯାଇଥିବା ସମସ୍ତ ଟଙ୍କା ଜବତ କରିଗଲା ।

ମଲବା ଲୋକ ଯେ ବ୍ୟାଙ୍କର କ୍ୟାସିଅର ନାରାୟଣ କୁମାର, ତାହା ସମସ୍ତଙ୍କ ବିଶ୍ୱାସ ହେଲା ।

ରାମସିଂ କହିଲେ— ଏହାର ହତ୍ୟା ଧନ ପାଇଁ ହୋଇନାହିଁ ।

ସୁଶୀଲ କହିଲା – କିଏ ଜାଣେ ହୁଏତ ଏହି ଲୋକ ତ୍ୟାଗୀ କମ୍ପା ଠାକୁରଙ୍କ ହତ୍ୟା ବିଷୟରେ କିଛି ଜାଣିଥିବ ଏବଂ ସେଥିପାଇଁ ତାର ମୁହଁ ବନ୍ଦ କରିବା ପାଇଁ କେହି ତାକୁ ହତ୍ୟା କରିଥିବ ।

ସୁଶୀଲ କଥାକୁ କେହି କାନ ଦେଲେ ନାହିଁ ।

ସୁଶୀଲ କହିଲେ— ଏହି କୋଠାରେ ଜୀବନ ମାଲହୋତ୍ରାଙ୍କର ଷ୍ଟୁଡିଓ ମଧ୍ୟ ଅଛି ଏବଂ ସେ ମଧ୍ୟ ମୋ ପାଖରୁ ଫଟୋ ନେବା ପାଇଁ ଲାଳାୟିତ ଥିଲେ ।

ଏହାଶୁଣି ଚନ୍ଦ୍ରଦୟାଲ ଚମକି ପଡ଼ିଲେ ।

ସେ ପଚାରିଲେ— ଜୀବନ ମାଲହୋତ୍ରା ଏଠାରେ ରହନ୍ତି ?

'ରହେ ନାହିଁ । ଏଠାରେ ତାର ଷ୍ଟୁଡ଼ିଓ ଅଛି ।'

ଏପରି କୌଣସି ଲୋକର ସନ୍ଧାନ ନଅ ଯେ କି ଏ କୋଠାରେ ସମସ୍ତ ଭଡ଼ାଟିଆଙ୍କୁ ଜାଣିଥିବ ।

ଚୌକିଦାରକୁ ଡକାଗଲା ।

ଜଣାଯାଇଛି ଯେ ତୃତୀୟ ମହଲାରେ ଏବା ଗୋଟିଏ ଫ୍ଲାଟକୁ ଜୀବନ ମାଲହୋତ୍ରା ଷ୍ଟୁଡିଓ ଭାବେ ବ୍ୟବହାର କରୁଛନ୍ତି । ଗତ ରାତି

ଏଗାରଟା ସମୟରେ ସେ ନିଜ ଷ୍ଟୁଡ଼ିଓକୁ ଯାଇଥିଲେ ଏବଂ ସେତେବେଳେ ତାଙ୍କ ସହିତ ଗୋଟିଏ ଯୁବତୀ ଝିଅ ମଧ୍ୟ ଥିଲା ।

ପଚାରିଲେ—ଜୀବନମାଲହୋତ୍ରା ଏଠାରୁ ଗଲେ କେତେବେଳେ ?

ଚୌକିଦାର କହିଲା ଜାଣେ ନାହିଁ । ସେ ଗଲା ବେଳେ ମୁଁ ଦେଖିନାହିଁ ।

ରାମସିଂ ଆଦେଶ ଦେଲେ—ଏହାକୁ ଆରେଷ୍ଟ କର ।

ପ୍ରଭୁଦୟାଲ କହିଲେ—Yes Sir !

ନାରାୟଣକୁମାର ହତ୍ୟା ଦେଖି ସୁନୀଲ ଆଶ୍ଚର୍ଯ୍ୟ ହେଲେ । ସେ ଆଶା କରୁଥିଲେ ଯେ ନାରାୟଣ କୁମାର ଜୀବିତରେ ଧରା ପଡ଼ିବେ ଏବଂ ସେ ସ୍ୱୀକାର କରିବ ଯେ ଫଟୋ ହାସଲ କରିବା ପାଇଁ ଚେଷ୍ଟା କରି ସେ ଠାକୁରଙ୍କୁ ହତ୍ୟା କରିଛି । ଠାକୁର ହତ୍ୟା ସମୟରେ ନାରାୟଣକୁମାର ମଧ୍ୟ 'ବ୍ଲାଷ୍ଟ' ଅଫିସ ପାଖରେ ବୁଲୁଥିଲେ । କିଏ ଜାଣେ ସେ ହତ୍ୟାକାରୀକୁ ହୁଏତ ଦେଖି ପକାଇଥିବ ଏବଂ ହତ୍ୟାକାରୀ ତା'ର ମୁହଁ ବନ୍ଦ ରଖିବା ପାଇଁ ତାକୁ ହତ୍ୟା କରିଥିବ ।

ସୁନୀଲ ତାଙ୍କର ଧାରଣା ରାମସିଂଙ୍କୁ କହିଲେ ।

ତା'ପରେ ପୋଲିସ ଡାକ୍ତର ସେଠାରେ ପହଞ୍ଚିଲେ । ସେ କହିଲେ ଯେ ଗତ ରାତି ପ୍ରାୟ ୧୨ଟାରେ ହତ୍ୟା ହୋଇଛି ।

ରିଭଲଭର ଚେକ୍ କରାଗଲା । ଜଣାଗଲା ଯେ ସେଇଟା ନାରାୟଣ କୁମାରଙ୍କର ଏବଂ ରିଭଲଭରର ଲାଇସେନ୍ସ ମଧ୍ୟ ତାଙ୍କ ପାଖରେ ଥିଲା ।

ସେହି ସମୟରେ ଜଣେ ସବ୍‌ଇନସ୍‌ପେକ୍ଟ ପ୍ୟାରେଲାଲକୁ ସାଙ୍ଗରେ ଆଣି ପହଞ୍ଚିଲେ ।

ସବ୍‌ଇନସପେକ୍ଟର କହିଲେ—ଏ ବାବୁ ସାମନା ହୋଟେଲରେ ରହନ୍ତି । ଏ କହୁଛନ୍ତି ଯେ ଗୁଳି ଫୁଟିବା ଶବ୍ଦ ସେ ଶୁଣିଛନ୍ତି ।

ସୁନୀଲ ତା ଆଡକୁ ଅନାଇଲେ । ସୁନୀଲକୁ ଦେଖି ସେ ଖାଲି କନକନ ହେଉଥାଏ । ସୁନୀଲ ପାଖରୁ ସେ ମଧ୍ୟ ଫଟୋ ହାସଲ କରିବାକୁ ଚାହୁଁଥିଲା ବୋଲି ସୁନୀଲ କାହାରିକୁ କହିବାକୁ ଇଚ୍ଛା କରୁ

ନଥିଲେ । ସୁଶୀଳ ଭାବୁଥିଲେ ଏପରି ଲୋକ କେବେହେଲେ ଠାକୁରଙ୍କ ହତ୍ୟାକାରୀ ହୋଇ ନପାରେ ।

ଚନ୍ଦ୍ରଦୟାଳ ତାଙ୍କୁ ପଚାରିଲେ— ଆପଣ ଗୁଳି ଫୁଟିବା ଶବ୍ଦ ଶୁଣିଥିଲେ ?

ପ୍ୟାରେଲାଲ କହିଲା — ମୁଁ ଭାବୁଛି ସେଇଟା ଗୁଳିର ଶବ୍ଦ ଥିଲା । କାଲି ରାତିରେ ମୋତେ ନିଦ ଆସୁ ନଥିଲା । ହୋଟେଲରେ ମୋ ରୁମ୍ ଏହି ଫ୍ଲାଟର ସାମନାରେ ମୁଁ ପଲଙ୍କ ଉପରେ ବସି ଥିଲି । ପ୍ରାୟ ରାତ ଅଧରେ ମୁଁ ଏପରି ଶବ୍ଦ ଶୁଣିଲି, ଯାହା କି ଗୁଳି ଫୁଟିବାର ଶବ୍ଦ ଥିଲା । ମୁଁ ସେତେବେଳେ ଭାବିଲି ବୋଧହୁଏ କୌଣସି କାରର ଚକା ଫାଟିବାର ଶବ୍ଦ, କିନ୍ତୁ ଆଜି ଯେତେବେଳେ ଜାଣିଲି ଯେ ହତ୍ୟା ହୋଇଛି,ମୁଁ ଭାବିଲି କାଲି ମୁଁ ଯେଉଁ ଶବ୍ଦ ଶୁଣିଥିଲି ତାହା ନିଶ୍ଚୟ ଗୁଳିର ଶବ୍ଦ ।

ଆପଣ ନାରାୟଣଙ୍କୁ ଚିହ୍ନନ୍ତି ?

ପ୍ୟାରେଲାଲ ଶବକୁ ନିରେଖି ଦେଖିଲେ ଏବଂ କହିଲେ ନାଁ ।

ମୁଁ ଥରେ ଅଧେ ଏହାଙ୍କୁ ଏହି କୋଠାରୁ ବାହାରି ରାସ୍ତାରେ ବୁଲାବୁଲି କରି ବାର ଦେଖିଥିଲି । କିନ୍ତୁ ମୁଁ ଜାଣେନାହିଁ ଯେ ଇଏ କିଏ ?

ପ୍ୟାରେଲାଲ ସାକ୍ଷୀରୁ କେବଳ ଏତିକି ଲାଭ ହେଲା ଯେ ନାରାୟଣ କୁମାରଙ୍କ ମୃତ୍ୟୁର ସମୟଟା ଭଲ ଭାବେ ଜଣା ପଡ଼ିଲା ।

ତା'ପରେ ପ୍ୟାରେଲାଲଙ୍କୁ ଯିବାକୁ କହିଲେ ।

ସେ ସୁଶୀଳ ପାଖ ଦେଇ ଯାଉଥିବାବେଳେ ଟିକିଏ ଠିଆ ହୋଇ ପଡ଼ିଲା ।

ଫୁସ୍ ଫୁସ୍ ହୋଇ ସେ କହିଲା —'ଭାଇ ସାହେବ', ଏଣ୍ଡ ଲେଡ ସେ ଫଟୋ ଆଣିବାକୁ ଚେଷ୍ଟା କରିଥିଲା ନା ?

ସୁଶୀଳ ଯନ୍ତ୍ରବତ ସହ ମୁଣ୍ଡ ହଲାଇଲେ ।

***

ସୁଶୀଲ 'ବ୍ଲାଷ୍ଟ' ଅଫିସରେ ପହଞ୍ଚିଲେ ।

ସେ ନିଜ କ୍ୟାବିନରେ ଯାଇ ବସିଲେ । ସେ ମୁଣ୍ଡରେ ହାତ ଦେଇ ଆଖିବୁଜି ଚିନ୍ତା କରୁଥା'ନ୍ତି ।

କିଛି ସମୟ ସେହିପରି ବସି ଆଖି ଖୋଲିଲେ । ଖଣ୍ଡିଏ ସିଗାରେଟ ଲଗାଇ କଲିଂବେଲ ବଜାଇଲେ ।

ମାନସିଂ ଭିତରକୁ ଆସିଲା ।

ସୁଶୀଲ କହିଲେ—କଫି ନେଇ କରି ଆସ ।

ମାନସିଂ ହେଉ କହି ସେଠାରୁ ଚାଲିଗଲା ।

ସୁଶୀଲ ଚୁପଚାପ ବସି ସିଗାରେଟ୍ ଟାଣୁ ଥାଆନ୍ତି ।

ହଠାତ୍ ସୁଶୀଲଙ୍କର ଆଖି ଟେବୁଲ ଉପରେ ଥିବା ଟ୍ରେ ଉପରେ ପଡ଼ିଲା ଏବଂ ତା ତଳେ ମାଟିଆ ରଙ୍ଗର ଭ ଣ ଦେଖା ଯାଉଥିଲା । ସେ ଫାଇଲ ଘୁଞ୍ଚାଇ ଦେଖିଲେ ଗୋଟିଏ ଲଫାପା ଥିଲା, ସୁଶୀଲଙ୍କର ଭଲ-ଭ ;ବ ମନେ ଥିଲା ଯେ ସେ କିଛି ସେଠାରେ ରଖି ନ ଥିଲେ ।

ସେ ଲଫାପା ଖୋଲି ଦେଖିଲେ ।

ତା ଭିତରେ ୮×୧୦ ସାଇଜର ୨ଟି ଫଟୋ ଥିଲା ।

ସୁଶୀଲ ବ୍ୟଗ୍ରତା ସହ ଦୁଇଟି ଫଟୋ ବାହାରକୁ ବାହାର କରି ଦେଖିଲେ ଯେ ସେ ଫଟୋ କମର୍ସିଆଲ୍ ଷ୍ଟ୍ରିଟରେ ଉଠାଇଥିବା ତାଜମ୍ୟା ପଟ୍ଟିଆରର ।

ସେଥିରେ ଗୋଟିଏ ଫଟୋ ଥିଲା ଯେଉଁଟାକୁ କ ସୁଶୀଲ ଭ୍ରମେ ଓ୍ୱୀଗୀ ଅଫିସକୁ ଯାଇ ଉଠାଇଥିଲେ ।

ସୁଶୀଲ ଅନେକ ସମୟ ପର୍ଯ୍ୟନ୍ତ ସେହି ଫଟୋକୁ ଦେଖିଲେ ।

ଜଣାଯାଉଛି ଠାକୁର ବୋଧହୁଏ ଶୀଘ୍ର ପ୍ରଥମ ରୋଲ ଫଟୋ ଡେଭଲପ କରି ଦୁଇଟିଯାକ ପ୍ରିଣ୍ଟ ସୁଶୀଲଙ୍କ ଟେବୁଲରେ ରଖି ଦେଇ

ଯାଉଥିଲେ । ସୁନୀଲ କାଲିଠାରୁ ନିଜ କ୍ୟାବିନରେ ପଶି ନଥିଲେ । ତେଣୁ ଲଫାପାଟା ଦେଖି ପାରି ନାହାନ୍ତି ।

ହଷ୍ଟାକାଷ୍ଟକୁ ବୋଧହୁଏ ଜଣା ନ ଥିବ ଯେ ଠାକୁର ସେ ଫଟୋ ପ୍ରିଣ୍ଟ କରିପାରିଛନ୍ତି ବୋଲି । ଯେତେବେଳେ ସେ ଅନ୍ୟ ଫଟୋ ଗୁଡ଼ିକ ପ୍ରିଣ୍ଟ କରୁଥିଲ ସେହି ସମୟରେ ବୋଧହୁଏ ହଷ୍ଟା ହୋଇଛି ।

ଫଟୋକୁ ନିରୀକ୍ଷଣ କରି ଦେଖିଲେ । ଫଟୋ ପୁରା ପରିଷ୍କାର ଥିଲ । ଫଟୋର କୋଣରେ କେଦାରନାଥ ଓ ଦମୟନ୍ତୀ କୋଶୀ ଦେଖାଯାଉ-ଥିଲେ । ତାହାଣ ପଟ ଫୁଟପାଥରେ ନିଜ ହୋଟେଲ ସାମନାରେ ଠିଆ ହୋଇ ପ୍ୟାରେଲାଲ ଡାକସ୍ତା ପ୍ରୋସେସନକୁ ଦେଖୁଥିଲେ । ଅଳ୍ପ ଦୂରରେ ଟ୍ୟାକ୍ସିର ଖୋଲା କବାଟ ପାଖରେ ଅଚଳା ଠିଆ ହୋଇଥିଲେ । ଟ୍ୟାକ୍ସି ପାଖ ଫୁଟପାଥରେ ନାରାୟଣ କୁମାର ଯାଉଥିଲେ । ଶ୍ରୀନିବାସ ହାଉସର ସାମନା କୋଠାର ମୁଖ୍ୟ ଦ୍ୱାରରେ ସୋହନଲାଲ କୋଶୀ ଠିଆ ହୋଇ-ଥିଲେ । ଅନ୍ୟ ଦ୍ୱାର ପଟେ ଜୀବନ ମାଲହୋତ୍ରା ଓ ରେଖା ବାହାରକୁ ବାହାରୁ ଥିଲେ ।

ଅନ୍ୟପଟେ ଗୋଟିଏ ମର୍ସେଡ଼ିଜ୍ କାର ଠିଆ ହୋଇଥିଲା, ଯାହା ଉପରେ କି ସୁନୀଲର ଦୃଷ୍ଟି ବିଳମ୍ବରେ ପଡ଼ିଲା । ସେହି କାରର ଝରକା-ବାଟେ ମୁଣ୍ଡ ବାହାରକୁ ରଖି କେହି ଜଣେ ଅଚଳାର ଟ୍ୟାକ୍ସି ଆଡ଼କୁ ଅନାଇଥିଲା । ସେହି ଲୋକ ଏ: କେ ମଜୁମଦାର ଥିଲେ ଏବଂ ସୁନୀଲ ସେହି କାରକୁ ମଧ୍ୟ ଚିହ୍ନିଥିଲା, ଯାହାକି ମଜୁମଦାରଙ୍କର ନିଜର ଥିଲା । ଫଟୋରେ କାରର ନମ୍ବର ପରିଷ୍କାର ଭାବେ ପଢ଼ି ହେଉଥିଲା ।

ମଜୁମଦାରଙ୍କୁ ବର୍ତ୍ତମାନ ଫଟୋରେ ସୁନୀଲ ଦେଖୁଛନ୍ତି । କିନ୍ତୁ ଫଟୋ ଉଠାଇଲାବେଳେ ତାଙ୍କୁ ସେ ଦେଖାଯାଇ ନଥିଲା । କିନ୍ତୁ ଫଟୋ ପ୍ରମାଣିତ କରୁଥିଲା ଯେ ସେ ସମୟରେ ସେଠାରେ ସେ ଉପସ୍ଥିତ ଥିଲେ ।

ତେଣୁ ସେହି ଫଟୋ ହାସଲକରିବା କେବଳ ନଜର ଟିଅ ପାଇଁ ନୁହେଁ ତାଙ୍କର ପାଇଁ ମଧ୍ୟ ଦରକାର ଥିଲା ।

ସୁଶୀଲ ସେ ଫଟୋ ଦୁଇଟିକୁ ଲଫାପା ଭିତରେ ରଖି ଦେଲେ । ସେ ନିଜ ଚେୟାରରୁ ଉଠି ବାହାରକୁ ଆସିଲେ ।

ସେହି ସମୟରେ ମାନସିଂ ଚଟି ନେଇ ଆସିଲା ।

ସେ କହିଲା— ଆଜ୍ଞା, ଚଟି ।

ସୁଶୀଲ କହିଲେ – ତୁମେ ପିଇ ହଅ । ଏହା କହି ଗଳି ଆଡ଼କୁ ଅଗ୍ରସର ହେଲେ ।

ମାନସିଂ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଅନାଇ ରହିଥିଲା ।

ସୁଶୀଲ ଡାର୍କରୁମରେ ପହଞ୍ଚିଲେ । ସେତେବେଳେ ଡାର୍କରୁମ ଖାଲିଥିଲା । ସେ ଭିତରପଟୁ କବାଟ ବନ୍ଦ କରି ଦେଲେ । ଲଫାପାରୁ ସେ ଫଟୋ ଦୁଇଟି ବାହାର କଲେ । ପ୍ରଥମେ ସେ ଫଟୋ ଦୁଇଟିର ଫଟୋ ଉଠାଇ ନେଗେଟିଭ୍ କଲେ ଏବଂ ନୂଆ ନେଗେଟିଭ୍‌ରୁ ଅଟି ଲେଖାଏଁ ପ୍ରିଣ୍ଟ ପ୍ରସ୍ତୁତ କଲେ ।

ଭାଗୀ ହତ୍ୟାର ରହସ୍ୟ ତାଙ୍କ ମନରେ ଖେଳୁଥିଲା ।

***

ସୁଶୀଲ ମଜୁମଦାରଙ୍କ ଘରେ ପହଞ୍ଚିଲେ ।

ମଜୁମଦାର ସେଠାରେ ନ ଥିଲେ, କିନ୍ତୁ ଅଚଳା ସେଠାରେ ଉପସ୍ଥିତ ଥିଲେ ।

ସୁଶୀଲ ତାଙ୍କୁ ପ୍ରଶ୍ନ କଲେ— ବର୍ତ୍ତମାନ ସେତେବେଳେ ତୁମେ ଜାଣି ସାରିଲଣି ଯେ ତୁମେ ହତ୍ୟା କରିନାହିଁ, ତୁମେ କଣ ଅନୁମାନ କରିପାରୁଛ ଯେ ପ୍ରକୃତରେ କିଏ ହତ୍ୟା କରିଛି ?

ଅଚଳା ନିରୁତ୍ତର ରହିଲେ । ସେ ଖୁବ ଭୟଭୀତ ଜଣା ଯାଉଥିଲା ।

ସୁଶୀଲ କହିଲେ — ପ୍ରକାଶ ଜଣେ ସ୍ୱୀକାର କରିଛି ଯେ ତୁମ ପରେ ସେ ତ୍ୟାଗୀ ଅଫିସକୁ ଯାଇଥିଲେ ଏବଂ ବର୍ତ୍ତମାନ ପ୍ରମାଣ ମିଳିଛି ଯେ ହତ୍ୟା ସମୟରେ ତୁମ ବାପା କମର୍ସିଅଲଷ୍ଟ୍ରିଟରେ ଉପସ୍ଥିତ ଥିଲେ।

ସେ ନର୍ଭସ ସ୍ୱରରେ କହିଲେ— ମୁଁ ଜାଣିପାରୁନି ଯେ ମୁଁ କଅଣ କହିବ।

ଯାହା କହି ପାରୁଛ କୁହ, ମୁଁ ସବୁ ବୁଝିଯିବି।

ସୁଶୀଲ ମୁଁ ତୁମକୁ ଆଗରୁ କହିଥିଲି ଯେ ବାପାଙ୍କ ରୁମ୍‌ରେ ଥିବା ଟେବୁଲ ଡ୍ର ଭିତରୁ ତାଙ୍କ ରିଭଲଭର ବାହାର କରି ନେଇ ତ୍ୟାଗୀ ପାଖକୁ ଯାଇଥିଲି। ସେଠାରେ ମୁଁ ତ୍ୟାଗୀ ଉପରକୁ ଗୁଳି ଚଳାଇଥିଲି ଏବଂ ରିଭଲଭର ସେଠାରେ ପକାଇ ଦେଇ ପଳାଇ ଆସିଲି। ସେଠାରୁ ଫେରି ଦେଖିଲି ବାପାଙ୍କ ଟେବୁଲ ଡ୍ରରେ ସେହି ରିଭଲଭର ରଖା ହୋଇଥିଲା। ସେତେବେଳେ ମୋତେ କିଛି ବୁଝି ପଡିଲା ନାହିଁ। ସେଠାରୁ ରିଭଲଭର ନେଇ ମୁଁ ଅନ୍ୟ ଜାଗାରେ ଲୁଚାଇ ଦେଲି। ସେତେବେଳ ପର୍ଯ୍ୟନ୍ତ ମୋର ଧାରଣା ଥିଲା ଯେ ମୁଁ ତ୍ୟାଗୀକୁ ହତ୍ୟା କରିଥିଲି ସେଥିପାଇଁ ମୁଁ ଭାବିଲି ବାପା ବୋଧହୁଏ ସେଠାକୁ ଯାଇ ରିଭଲଭର ଟହ୍ଲିପାରି ନେଇ ଆସିଥିବେ। କିନ୍ତୁ ବର୍ତ୍ତମାନ ମୁଁ ଯେତେବେଳେ ଜାଣିଲି ଯେ ମୋ ଯିବା ପରେ ସେହି ରିଭଲଭରରୁ କୌଣସି ତୃତୀୟ ଗୁଳି ଚଳିଥିଲା ମୁଁ.........।

ତୁମେ ଭାବୁଛ ଯେ ତୁମର ବାପା ତ୍ୟାଗୀକୁ ହତ୍ୟା କରିଛନ୍ତି ?

ସେ କହିଲେ— ମୁଁ କିଛି ଚିନ୍ତା କରୁ ନାହିଁ।

କାଲି ଲଞ୍ଚ ଖାଇବା ସମୟରେ ତୁମ ବାପା ଘରେ ଥିଲେ ?

ମୁଁ ଜାଣେ ନାହିଁ, ସେ ସମୟରେ ମୁଁ ଏଠାରେ ନ ଥିଲି।

କେହି ଚାକର ପ୍ରଜାସ୍ତ ନ ଥିବେ। ସେମାନଙ୍କୁ ଡାକ ଆଣ।

ଅତଲା ଗୋଟିଏ ଚାକରକୁ ଡାକିଲେ।

ସୁନୀଲ ସୁକରକୁ ପଚାରିଲେ— କାଲି ମଜୁମଦାର ବାବୁ ଲଞ୍ଚ ଖାଇବାକୁ ଘରକୁ ଆସିଥିଲେ ?

ସୁକର କହିଲା— 'ଆଜ୍ଞା ଆସିଥିଲେ ।

'କେତେ ସମୟ ପର୍ଯ୍ୟନ୍ତ ରହିଥିଲେ ?'

'ଖାଇ ଖାଇ ଚାଲି ଯାଇଥିଲେ ।'

କାହିଁକି ? କିଛି ଜରୁରୀ କାମ ଥିଲା ନା କ'ଣ ?

ଟେଲିଫୋନ ଆସିଥିଲା । ତାହା ଶୁଣି ବାବୁ ଚାଲି ଯାଇଥିଲେ ।

ଠିକ୍ ଅଛି । ତୁମେ ଯାଇପାର ।

ସୁକର ଚାଲିଗଲା ।

ଅଚଳା ପ୍ରଶ୍ନବାଚକ ଦୃଷ୍ଟିରେ ସୁନୀଲଙ୍କୁ ଚାହିଁ ରହିଲା ।

ସୁନୀଲ କହିଲେ— ଅଚଳା, ତୁମେ ଚିନ୍ତା କରନାହିଁ ମୋ ମସ୍ତିଷ୍କରେ ଏହି ହତ୍ୟା ରହସ୍ୟ ବିଷୟରେ ଅନ୍ୟ ପ୍ରକାର ଧାରଣା ଆସୁଛି । ମୋର ଥିଓରି ଅନୁସାରେ ଏଥିରେ ମଜୁମଦାର ବାବୁଙ୍କ ହାତ ଅଛି ।

ଓଃ !

ମୁଁ ଗୋଟିଏ ଉପାୟ ସ୍ଥିର କରିଛି, ଯାହା କି ହତ୍ୟାକାରୀର ମୁଖା ଖୋଲି ଦେବ । କିନ୍ତୁ ମୋର ସେହି ଉପାୟ ପୋଲିସ ସହଯୋଗ ବିନା ସଫଳ ହୋଇ ପାରିବ ନାହିଁ । ମୁଁ ଏଠାରୁ ସିଧା ପୁଲିସସାହେବଙ୍କ ପାଖକୁ ଯାଉଛି, ମୋ ଆଶା ଏଥିପାଇଁ ମୁଁ ତାଙ୍କ ସାହାଯ୍ୟ ପାଇବି ।

ଅଚଳା ଚୁପ୍ ରହିଲେ ।

ସୁନୀଲ ତାଙ୍କୁ ଆଶ୍ୱାସନା ଦେଇ ସେଠାରୁ ଚାଲିଗଲେ ।

***

ସୁନୀଲ ପୋଲିସ ହେଡକ୍ୱାର୍ଟରରେ ପହଞ୍ଚିଲେ ।

ଇନସ୍ପେକ୍ଟର ତ୍ରିଭୁବନସ୍ୱାଇଁ ରୁମ୍‌ରେ ଉପସ୍ଥିତ ଥିଲେ । ସେ ଚନ୍ତାମଗ୍ନ ଥିବା ପରି ଜଣା ପଡୁଥିଲା । ସେ ମୁଣ୍ଡ ଉଠାଇ ସୁଶୀଳ ଆଡକୁ ଅନାଇଲେ ।

ସୁଶୀଳ ପଗ୍ଭରିଲେ—କ'ଣ ଖବର ?

ତ୍ରିଭୁବନସ୍ୱାଇଁ କହିଲେ – କିଛି ଖବର ନାହିଁ ।

ଅର୍ଥାତ୍ ବର୍ତ୍ତମାନ ପର୍ଯ୍ୟନ୍ତ ହତ୍ୟାରହସ୍ୟର ପରଦା ଉଠିବାର କିଛି ସମ୍ଭବ ପଡ଼ୁନାହିଁ ?

ନାଁ ।

ଏହି କେଶ୍‌ର ପ୍ରମୁଖ ପ୍ରତିନିଧିମାନଙ୍କର ଗତିବିଧି କ'ଣ ?

ସୋହନଲାଲ ଜୋଶୀଙ୍କୁ ଗିରଫ କରାଯାଇଥିଲା, କିନ୍ତୁ ତାଙ୍କୁ ଛାଡ଼ି ଦେବାକୁ ପଡ଼ିଲା । ତାଙ୍କର ଓକିଲ କୋର୍ଟରୁ ରିଲିଜ ଅର୍ଡ଼ର ଆଣି ଆସିଥିଲା । କେଦାରନାଥ ବର୍ତ୍ତମାନ ମଧ୍ୟ ଧରା ପଡ଼ିଛି, କିନ୍ତୁ ଆମେ ବର୍ତ୍ତମାନ ପର୍ଯ୍ୟନ୍ତ ତାଙ୍କୁ କିଛି ଚ୍ଚାର୍ଜ କରିନାହୁଁ । ଜଣାପଡୁଛି ଶୀଘ୍ର ତା' ଉପରେ ଚ୍ଚାର୍ଜ କରି ତାଙ୍କୁ ବୁକ୍ କରିବାକୁ ପଡ଼ିବ ନହେଲେ ତାଙ୍କୁ ଛାଡ଼ିବାକୁ ପଡ଼ିବ ।

ତୁମେ ତା'ର ହାତଗୋଡ଼ ବାନ୍ଧି ପାରିଲନାହିଁ ?

ନାଁ । ଦମୟନ୍ତୀ ଜୋଶୀ କହୁଛନ୍ତି ଯେ ସବୁ ସମୟରେ କେଦାରନାଥ ତାଙ୍କ ସହିତ ଥିଲେ । କିନ୍ତୁ ଗୋଟିଏ ନୂଆ କଥା ଜଣା-ପଡ଼ିଛି ।

କ'ଣ ?

ଠିକ୍ ୮ଟା ୧୫ ମିନିଟ୍‌ରେ କେଦାରନାଥ ଦମୟନ୍ତୀ ଜୋଶୀଙ୍କ ଫ୍ଲାଟରେ ଥିଲେ । ଦମୟନ୍ତୀ ଜୋଶୀଙ୍କ ଫ୍ଲାଟ କମର୍ସିଆଲ ଷ୍ଟ୍ରିଟ୍‌ରେ ଅଛି । ତାଙ୍କର ଖାଦ୍ୟ ପ୍ରାୟ ସେ ସାମନା ହୋଟେଲରୁ ମଗାନ୍ତି । ଯେଉଁ ବୟ ତାଙ୍କ ପାଇଁ କଫି ନେଇ ଯାଇଥିଲା । ସେ କହୁଥିଲା ଯେ ଦୁଇଟା ପନ୍ଦର ମିନିଟରେ ସେ ସେଠାରେ ଥିଲେ ।

ଏଇ କଥାର କିଛି ମହତ୍ତ୍ୱ ଅଛି ?

ଜଣା ପଡ଼ୁନାହିଁ । ତୁମେ ପଗ୍ଭରିଲ ସେଥିପାଇଁ ମୁଁ କହିଦେଲି ।

ସୁଶୀଲ ଚୁପ୍ ରହିଲେ ।

ମୋ ପାଇଁ ଦୁଇଟା ପନ୍ଦର ମିନିଟ୍ ସମୟଟା ମହତ୍ୱ ନୁହେଁ । ଅମର ତରଫଦାର ଯେ ସେ ସାଢେ ଗୋଟାଏରୁ ଦୁଇଟା ଭିତରେ ସେ କେଉଁଠି ଥିଲେ । ସେଇ ସମୟ ମଧ୍ୟରେ କ ଶାର୍ଗିର ହତ୍ୟା ହୋଇଥିବା ! କେଦାରନାଥ କହୁଛନ୍ତି ଯେ ସାଢ଼େ ଗୋଟାଏ ଓ ଦୁଇଟା ମଧ୍ୟରେ ସେ ଦମୟନ୍ତୀ କୋଣୀଙ୍କ ସହିତ ଥିଲେ । ଦମୟନ୍ତୀ କୋଣୀ ମଧ୍ୟ ତାଙ୍କ କଥାର ସ୍ପଷ୍ଟିକରଣ କରୁଛନ୍ତି ।

ତୁମେ ଜୀବନ ମାଲହୋତ୍ରାଙ୍କୁ ମଧ୍ୟ ଚେକ୍ କରିବାର ଥିଲ ?

କରିଥିଲି । ତାଙ୍କ କହିବା ଅନୁସାରେ ସେ ବାରଟା ସମୟରେ ନିଜ ଘରକୁ ଫେରି ଆସିଥିଲେ, କିନ୍ତୁ ତାଙ୍କର ସ୍ତ୍ରୀ କହୁଛନ୍ତି ଯେ ତାଙ୍କ ସ୍ୱାମୀ ସାଢେ ୧୧ଟାରେ ଘରେ ପହଞ୍ଚିବାର ସେ ଜାଣି ନାହାନ୍ତି । ଜୀବନ ମାଲ୍‌ହୋତ୍ରା ମିଛ କହୁଛି ବୋଲି ମୁଁ ଜାଣିପାରୁଛି । ସେ ଉତ୍ତେଜିତ ଥିଲା ପରି ଜଣାପଡୁଛି । ତାଙ୍କର ଗତିବିଧିକୁ ଲକ୍ଷ୍ୟ ରଖାଯାଇଛି ।

କେଦାରନାଥଙ୍କୁ ତୁମେ ବିନା ସ୍ୱର୍ଫରେ କେତେ ସମୟ ପର୍ଯ୍ୟନ୍ତ ଧରି ରଖି ପାରିବ ?

ତାକୁ ଛାଡି ଦିଅ ।

ପ୍ରଭୁଦୟାଲ କହିଲେ— ତୁମ କଥା ଅନୁସାରେ ଛାଡ଼ି ଦେବି ?

'ହଁ ।'

କାହିଁକି ? ତୁମେ କ'ଣ ମୋର ଅଫିସର ନା ଏହି ରାଜ୍ୟର ଗଭର୍ଣ୍ଣର ?

ମୁଁ ତୁମକୁ ରାସ୍ତା ଦେଖାଉଛି ଯେ ତୁମେ ତାକୁ ଛାଡି ଦିଅ । ଏଥିରେ ତୁମର ଲାଭ ଅଛି ।

ମୋର କ'ଣ ଲାଭ ?

ତୁମେ ଏହି ସେନ୍‌ସେସନ୍ ଟ୍ରିପଲ୍ ମର୍ଡରର ହତ୍ୟାକାରୀଙ୍କୁ ଗିରଫ କରି ପାରିବ । ତୁମେ ଖୁବ୍ ପ୍ରଶଂସିତ ହେବ । ତୁମର ପ୍ରମୋସନ ହୋଇ-

ପାରେ । କିଏ ଜାଣେ ତୁମେ ଡ଼ି. ଏସ୍. ପି. ହୋଇପାର ।

କ'ଣ କହୁଛ ? ଯାହା କହୁଛ ପରିଷ୍କାର କୁହ ଯେପରି କି ମୁଁ ବୁଝି ପାରିବି ?

ମୁଁ କହୁଛି କେଦାରନାଥର ଫ୍ଲାଟରେ ମୁଁ ଗୋଟିଏ ଡ୍ରାମା ଷ୍ଟେଜ କରିବାକୁ ଚାହୁଁଛି, ଯାହାର କେଦାରନାଥ ପ୍ରମୁଖପାତ୍ର ହେବେ । ସେ ଯଦି ଜେଲରେ ରହିବେ ସେ ଡ୍ରାମା ହୋଇ ପାରିବ ନାହିଁ । ଯେତେବେଳେ ସେ ଡ୍ରାମା ଶେଷ ହେବ ସେତେବେଳେ ସବୁ ରହସ୍ୟର ପର୍ଦ୍ଦା ଉଠି ଯାଇଥିବ, ହତ୍ୟାକାରୀ ତୁମ ସମ୍ମୁଖରେ ଥିବ ଏବଂ ଜଣେ ବଡ ପରିଶ୍ରମୀ ଏବଂ ଉପଯୁକ୍ତ ପୋଲିସ ଅଫିସର ରୂପେ ସାରା ସହରରେ ତୁମର ଜୟଧ୍ୱନୀ ହେବ ।

'କଥାଟା ଖୋଲିକରି କୁହ ।'

କିଛି ବଡକଥା ନୁହେଁ । ମୁଁ ଯେତିକି ବୁଝାଇ ଦେଲି ସେତିକି । ମୁଁ କେଦାରନାଥର ଫ୍ଲାଟ ଭିତରେ ଡ୍ରାମା ଷ୍ଟେଜ୍ କରିବି, ତୁମେ ବାହାରେ ଠିଆ ହୋଇ ସବୁ ଶୁଣୁଥିବ । ମୁଁ ତୁମକୁ ସଙ୍କେତ ଦେଲେ ତୁମେ ଭିତରକୁ ପଶିକି ଓ ଅପରାଧୀକୁ ଗିରଫ କରିବ ।

'କେଦାରନାଥକୁ ?'

'ଯଦି ସେ ଅପରାଧୀ ହୋଇଥାଏ ତାକୁ ନଚେତ୍ ଅନ୍ୟକୁ ?'

'ଆଉ କାହାକୁ ? ସେଠାରେ ଆଉ କିଏ ଥିବ ?'

'ସୋହନଲାଲ କୋଠାରୀ ।'

ସେହି ଦୁହିଁଙ୍କ ମଧ୍ୟରୁ ଜଣେ ହତ୍ୟାକାରୀ ।

'ନ ହୋଇ ମଧ୍ୟ ପାରନ୍ତି ?'

ପ୍ରଭୁଦୟାଲ କହିଲେ – କାହିଁକି ମୋ ମୁଣ୍ଡ ତୁମେ ଖରାପ କରୁଛ ?

ତୁମେ ଭୁଲି ଯାହିଁ ସେ ଲାଭର ସଉଦା କରିବା ପାଇଁ ମୁଁ ତୁମ ପାଖକୁ ଆସିଛି । ମୁଁ ତୁମ ସାହେବଙ୍କ ପାଖକୁ ମଧ୍ୟ ଯାଇ ପାରିଥାଆନ୍ତି । ସେ ମୋର ସାଙ୍ଗ ।

ଆଜିକାଲି ସୁପରିଣ୍ଟେଣ୍ଡେଣ୍ଟବାବୁ ତୁମକୁ ବହୁତ କଷ୍ଟ ଦେଉ-ଛନ୍ତି । ସେଥିପାଇଁ ତୁମେ ମୁଣ୍ଡ ଉପରେ ଚଢୁଛ ।

ପ୍ରଭୁ, ମୋ କଥା ମାନିବାରେ କୌଣସି ଆପତ୍ତି ନାହିଁ । ଯଦି ତୁମର କିଛି ଲାଭ ନ ହେବ କ୍ଷତି ବା କ'ଣ ହେବ । ତୁମେ କେବଳ ଏତିକି କରିବ ଯେ ମୋ କହିବା ଅନୁସାରେ ତୁମେ କେଦାରନାଥଙ୍କୁ ଛାଡ଼ି ଦେବ ।

ଦୁଲ୍ଲଦୟାଲ ଚୁପ୍ ରହିଲେ ।

ମୁଁ ତୁମକୁ କେବେ ହେଲେ ଧୋକା ଦେଇଛି କି ?

ନାହିଁ ତ ଦେଇଥିଲ । ତୁମେ ମୋ ପୂର୍ବରୁ ତ୍ୟାଗୀର ଅଫିସରେ ପଶିଲ ମୋତେ କହିଲ ନାହିଁ । ତୁମେ ଆଗରୁ ଜାଣିଥିଲ ଯେ ଅଚଳା ମଜୁମଦାର ଗୁଳି ଚଳାଇଛି, କିନ୍ତୁ ତୁମେ ଚୁପ୍ ରହିଲ । ତୁମେ······।

ମୋର ଉଦ୍ଦେଶ୍ୟ ତାହା ନ ଥିଲା । ମୁଁ ତାହିଁକି ସେପରି ସବୁ କରୁଥିଲି ତୁମେ ଜାଣି ପାରିଛ ।

'ତା'ହେଲେ ତୁମର ଉଦ୍ଦେଶ୍ୟ କ'ଣ ?

ମୋର ଉଦ୍ଦେଶ୍ୟ ଏହା ଯେ ଆଗରୁ କେବେ ତୁମେ ମୋର ଇଙ୍ଗିତରେ କାମ କରି ଅସଫଳ ହୋଇଛ କି ? ଏହିଟା ମନେରଖ ଯେ ମୋ ଯୋଗୁ 'ବ୍ଲାଷ୍ଟ'ରେ ତୁମର ନାମରେ ଯେଉଁ ଚୁଣ୍ଡା ପଢାଯାଉଛି ତା' ପଛରେ ମୋର ହାତଅଛି ଏବଂ ତୁମର ପ୍ରତ୍ୟେକ ଉଚ୍ଚ ଅଫିସରମାନେ 'ବ୍ଲାଷ୍ଟ' ପଢ଼ନ୍ତି ।

କୌଣସି କେଶ୍‌କୁ ସମାଧାନ କରିବା ପାଇଁ ମୋର କୌଣସି ପ୍ରେସ ରିପୋର୍ଟର ଦରକାର ନାହିଁ । ମୁଁ ଅପରାଧୀକୁ ନିଜେ ଧରି ପାରିବି । ଏହରେ ଅଧେ ତୁ ସାହାଯ୍ୟ କରିଛୁ ବୋଲି ତୋର ସାହ ବଢିଗଲା । ଆଉ ମୁଁ ପୋଲିସ ଇନ୍‌ସ୍‌ପେକ୍ଟର ହୋଇ ଘାସକଟା ହୋଇଗଲି ।

ଦେଖ, ରାଗ ନାହିଁ । ମୁଣ୍ଡ ଥଣ୍ଡା କରି କାମ କର । ବର୍ତ୍ତମାନ ପର୍ଯ୍ୟନ୍ତ ପୋଲିସ ଏଇ କେଶ୍‌ରେ କେତେଦୂର ଆଗେଇଛି ? ଯେଉଁ

ଲୋକମାନଙ୍କ ଉପରେ ତୁମେ ସନ୍ଦେହ କରୁଛ ସେମାନଙ୍କ ବିନା ପ୍ରମାଣରେ ତୁମେ କମ୍ପାନୀ ମର ଅଫିସର ସାତଜଣଙ୍କୁ ପର୍ଯ୍ୟନ୍ତ ଧରିବାକୁ ସାହସ କରିପାରିବେ ନାହିଁ । ଯେପରିକି ତୁମେ ସୋହନଲାଲ ଜୋଶୀ ଓ କେଦାରନାଥଙ୍କୁ ଧରି ଭିତରେଭର୍ତ୍ତି କରିଦେଲ,ସେହିପରି କ'ଣ ତୁମେ ମଜୁମଦାର କମ୍ପାନୀ ପ୍ରକାଶକୁ ଭିତରେ ଭର୍ତ୍ତି କରି ପାରିବ କି ? ତୁମେ କମ୍ପାନୀ ତୁମ ଅଫିସର ସେମାନଙ୍କ ଆଡ଼କୁ ଯଦି ଟିକିଏ ସେପରି ଦୃଷ୍ଟିରେ ଦେଖିବ ତେବେ ପୋଲିସ ଅଫିସରକୁ ଯାଇ ଗସ୍ତା ଜଡ଼ବେ ଯଦି ବାଦାମ ନ ବିକିବ ମୋତେ କହିବ ।

ପ୍ରହ୍ଲାଦସ୍ୱାଲଙ୍କ ମୁହଁରୁ କଥା ବାହାରିଲା ନାହିଁ ।

ଜୀବନ ମାଳୀହାତୀ ପକ୍ଷରେ ପଡ଼ି ତୁମର କିଛି ଲାଭ ହେବ ନାହିଁ । ତାର ଦୁର୍ଭାଗ୍ୟ ଯେ ତା ଷ୍ଟୁଡ଼ିଓ ସେହି କୋଠାରେ ଅଛି, ଯେଉଁଠାରେ କି ତୃପ୍ତାସ୍ଥ ହତ୍ୟା ହୋଇଥିଲା ଏବଂ କୌଣସି କାରଣରୁ ସେ ଏହା କହିବାକୁ ଚାହୁଁ ନାହିଁ ଯେ ହତ୍ୟା ସମୟରେ ସେ କେଉଁଠି ଥିଲା ।

ପ୍ରହ୍ଲାଦସ୍ୱାଲ ଚୁପ୍ ରହିଲେ ।

ତୁମର କେଦାରନାଥକୁ ସନ୍ଦେହ ହେଉଛି । ତ୍ୟାଗୀର ବ୍ଲାକମେଲିଂ କାର୍ଯ୍ୟରେ ମଧ୍ୟ ସେ ପ୍ରମାଣିତ ହୋଇ ସାରିଛି ଏବଂ ତାର କାର୍ଯ୍ୟକଳାପ ମଧ୍ୟ ଖୁବ୍ ରହସ୍ୟପୂର୍ଣ୍ଣ ଜଣା ଯାଉଛି । ତୁମେ ଜାଣିଛ ଯେ ଦମୟନ୍ତୀ ଜୋଶୀ କହୁଛି ଯେ ହତ୍ୟା ସମୟରେ କେଦାରନାଥ ତା ସାଙ୍ଗରେ ଥିଲେ । ସେ ଯଦି ତାହା ଜିଦ ଧରି କହେ ତୁମେ ତାର କିଛି କରି ପାରିବ ନାହିଁ ।

'ତୁମେ ତାକୁ ହତ୍ୟାକାରୀ ବୋଲି ପ୍ରମାଣ କରିପାରିବ କି ?

'ମୁଁ ଚେଷ୍ଟା କରିପାରେ ।' ଯଦି ସଫଳ ହୁଏ ତୁମର ନାଆଁ ହେବ । ଯଦି ନ ହେବ ତୁମର କ'ଣ ହେବ ?

'ଆଉ ଏଇଥିପାଇଁ ତୁମର ସବୁ କଥା ମୁଁ ମାନିବା ଉଚିତ୍ ?'

'ହଁ ।'

'ଜନ୍‌ସେନ୍‌ସ ।'

ସୁନୀଲ ଉଠି ଠିଆ ହେଲେ — ମୁଁ ବ୍ରମସିଂ ପାଖକୁ ଯାଉଛୁ ।

ପ୍ରଭୁଦୟାଲ କର୍କଶ ସ୍ୱରରେ କହିଲେ — 'ଏ' ଇଆଡ଼େ ଆସ ।

ସୁନୀଲ ଠିଆ ହେଲେ ।

'ମୁଁ କହିଲି ଇଆଡେ ଆସ ।'

ସୁନୀଲ ଟେବୁଲ ପାଖରେ ଆସି ଠିଆ ହେଲେ ।

ସେ ବ୍ୟସ୍ତ ହୋଇ ପଚାରିଲେ — କ'ଣ ?

ପ୍ରଭୁଦୟାଲ କହିଲେ — ତୁମେ ବୋଧହୁଏ ଭୁଲିଯାଉଛ ଯେ ତୁମେ ମଧ୍ୟ କ୍ରାଇମ୍ ସସ୍‌ପେକ୍ଟ । ମୁଁ ତୁମକୁ ଜେଲରେ ଭର୍ତ୍ତି କରିପାରେ ।

ହଁ ତା କାହିଁକି ନ ହେବ । ଆପଣ ଜଣେ ଇନସ୍‌ପେକ୍ଟର । ମୁଁ ଜଣେ ଗରିବ । ମୁଁ ଯଦି ଜଣେ ଧନୀଲୋକ ହୋଇଥାଆନ୍ତି, ତେବେ ତୁମେ ଚଉକି ଉପରୁ ଉଠି ଠିଆହୋଇ ମୋ ସହିତ କଥା କହିଥାଆନ୍ତ ଏବଂ ମୋ ପଛରେ Yes Sir, କହି ଗୋଡାଉଥାଆନ୍ତ ।

'କେଉଁ କଥା କୁହନାହିଁ ।'

'ଠିକ୍ ଅଛି । ତା ହେଲେ ମୋତେ ତୁମେ ବିରକ୍ତ କରୁଛ ।

ତୁମେ କ'ଣ ଚାହଁ ମୋତେ ଆଉ ଥରେ କୁହ ।

'ମୁଁ କେବଳ ଏତିକି ଚାହେଁ ଯେ ତୁମେ କେଦାରନାଥଙ୍କୁ ମୁକ୍ତ କରିଦିଅ । ସେ ଯେପରି ପଳାଇ ନ ଯାଏ, ତା ପଛରେ ତୁମେ ନିଜର କୌଣସି ଲୋକ ରଖ । ଯେତେବେଳେ କେଦାରନାଥ ତା ଫ୍ଲାଟରେ ପହଞ୍ଚିବ ତୁମର ଲୋକ ତୁମକୁ ସୂଚନା ଦେବେ ଏବଂ ତୁମେ ମୋତେ ଜଣାଇବ । ମୁଁ ତା ସହିତ ଫୋନରେ ସାକ୍ଷାତ ସମୟ ନିର୍ଦ୍ଧାରିତ କରିବି ଏବଂ ସେଠାରେ ପହଞ୍ଚିବି । ତାପରେ କେଦାରନାଥଙ୍କ ଫ୍ଲାଟରେ ଗୋଟିଏ ଡ୍ରାମା ହେବ, ତାର ଡାଇଲଗ୍ ତୁମେ ବାହାରେ ଠିଆ ହୋଇ ଶୁଣିବ । ଯଦି ପାରିବ ତେବେ ସାଙ୍ଗରେ ଗୋଟିଏ ଟେପରେକର୍ଡ ବା ଷ୍ଟେନୋଗ୍ରାଫର ନେଇଥିବ । ଯଦି ସେହି ଡ୍ରାମାର କିଛି ଫଳ ମିଳିବ, ତେବେ

କାର୍ଯ୍ୟସଫଳତାରେ ସାହାଯ୍ୟ ହେବ । ଯଦି ନ ହେବ ତେବେ ତୁମେ ଏଠାରୁ ଯାଇ ପୁଣି କେଦାରନାଥଙ୍କୁ ଅନ୍ୱେଷଣରେ ଧରିନେବ ।

ସେଠାରେ କିଛି ଗଣ୍ଡଗୋଳ ହେବନି ତ ?

'କହି ପାରିବ ନାହିଁ । ହୋଇପାରେ ।'

ସେ ଗଣ୍ଡଗୋଳକୁ ତୁମେ ଏକୁଟିଆ ସମ୍ଭାଳି ପାରିବ ?

'ମୁଁ ସେଠାକୁ ଏକା ଯିବ ନାହିଁ । ତାହାଙ୍କୁ ହେଲେ ସାଙ୍ଗରେ ନେଇଯିବି । ଆଉ ତୁମେ ତ ବାହାରେ ଠିଆ ହୋଇଥିବ' ।

ତୁମେ ଜାଣିଶୁଣି ବେଆଇନ ସବୁ କାମ କରିବାକୁ ଚାହୁଁ-ନାହଁ କି ?

ଯଦି ଚାହୁଁ ଥାଏ ତୁମର କ'ଣ କହ ? ଯେଉଁ କଥା ତୁମେ ଜାଣିନ ନାହିଁ ତାର ଚିନ୍ତା କରୁଛ ?

ଅର୍ଥାତ୍ କିଛି ଚିନ୍ତା ଅଛି ?

ହୋଇପାରେ । ତୁମେ ଜାଣିନାହଁ ଯେ ମହାପୁରୁଷମାନେ କହୁଛନ୍ତି ଯିଏ ଯେମିତି ତାଙ୍କୁ ସେମିତି ବ୍ୟବହାର କରିବ ।

ଆଉ ଯଦି ବେଆଇନ୍ କାମ କରି ତୁମେ ଧରାପଡ଼ି ଯିବ, ତେବେ ସେଥିରୁ ମୁକ୍ତି ପାଇବାକୁ ମୋ ଠାରୁ ଆଶା କରିବ ନାହିଁ ।

ନାଁ କରନ୍ତୁ । ଯଦି ଯୋଡ଼ା ମାଂସ ଖାଇବାକୁ ଚଢ଼ିବ ଖାଇବ । ଯଦି ପୁଷ୍ଟି ତୁଷ୍ଟି ହେବ ତୁମେ ଆଗ ମୁଣ୍ଡ ଅଗଙ୍କୁ ଦେଖାଇ ଦେବ । ଓ. କେ. ।

ତ୍ରିବିକ୍ରମଙ୍କ ସମ୍ମତି ସହ ମୁଣ୍ଡ ଟେକିଲେ ।

ସୁମନ କହିଲେ — ଗୋଟିଏ କଥା ମନେ ରଖିବ । ତୁମେ ସାବଧାନତା ସହ ସେଠାକୁ ଆସିବ । ଯଦି ମୁଁ କବାଟ ଖୋଲିକି ଡାକେ ତେବେ ତୁମକୁ ଭିତରକୁ ଆସିବାକୁ ପଡ଼ିବ । ଯଦି ମୁଁ ଜୋରରେ ପାଟି କରି ଡାକିବି ତେବେ ତୁମକୁ ଭିତରକୁ ଆସିବାକୁ ପଡ଼ିବ । ଯଦି ମୁଁ......' ।

ମୁଁ ସବୁ ବୁଝିପାରୁଛି । ମୋତେ ପିଲାଙ୍କ ବୁଝାଇଲା ପରି ବୁଝାଅ ନାହିଁ ।

'ଓ. କେ.' । ସୁଶୀଲ କହିଲେ ଏବଂ ସାଙ୍ଗେ ସଙ୍ଗେ ଆଗବୁଗଲେ ସତେ ଯେପରି କୌଣସି ଭୁଲିଥିବା କଥା ତାଙ୍କର ମନେ ପଡ଼ିଗଲା— ଆଉ ଗୋଟିଏ କଥା । କେଦାରନାଥଙ୍କୁ ଗୁଳି କରିବା ପୂର୍ବରୁ ଦମୟନ୍ତୀ କୋଶୀଙ୍କୁ ଏଠାରୁ କିଛି ବାହାନା କରି ଉଠାଇ ନିଅ ଏବଂ କିଛି ବାହାନାରେ ତାଙ୍କୁ ସେହି ସମୟ ପର୍ଯ୍ୟନ୍ତ ଅଟକାଇ ରଖିବ ଯେତେବେଳ ପର୍ଯ୍ୟନ୍ତ ଡ୍ରାମା ଶେଷ ହୋଇ ନ ଥିବ । ଖୁବ୍ ବେଶି ହେଲେ ଦୁଇ ଘଣ୍ଟାର କଥା । ଏତକ ସମୟ କୌଣସି ପୋଲିସ ହେଡ଼କ୍ୱାଟର ଦ୍ୱାରା କାହାରିକୁ ଅଟକାଇ ରଖିବା କିଛି ବଡ଼ କଥା ନୁହେଁ ।

ଚନ୍ଦ୍ରଦୟାଲ ସମ୍ମତି ଜଣାଇଲେ ।

ସୁଶୀଲ ମୁଖର୍ଜୀଙ୍କ ଉପରେ ପଡ଼ୁଥିଲେ ।

ସେଠାରେ ରମାକାନ୍ତ ନ ଥିଲେ କିନ୍ତୁ କୌଶିକ ଉପସ୍ଥିତ ଥିଲେ ।

ସୁଶୀଲ କହିଲେ— 'ତିନିଏ ଅଖାଡ଼ୁଆ କାମ ଅଛି ।' 'କରିବ'? 'କ'ଣ ?'

ସୁଶୀଲ ପକେଟରୁ ଗୋଟିଏ ଫଟୋ ବାହାର କଲେ । ତାହା ସେହି ଫିଲ୍ମ ଥିଲା ଯେଉଁଟାକି ସେ ଠାକୁର ଘଅର କରିଥିବା ଦୁଇଟି ଫଟୋରୁ ଫଟୋ ଉଠାଇବାରେ ବ୍ୟବହାର କରାଯାଇଥିଲା । ସେ ଫଟୋ କୌଶିକର ହାତ ଉପରେ ରଖିଦେଲେ ଏବଂ କହିଲେ— ଏହା ଗୋଟିଏ ଫଟୋ ଏହାକୁ ତୁମେ କେଦାରନାଥ ନାମକ ଜଣେ ଲୋକଙ୍କ ଫ୍ଲାଟର ଡ୍ରଇଂ ରୁମରେ ଲୁଚାଇ ରଖି ଆସିବାକୁ ହେବ ।

ଠିକଣା ? କୌଶିକ ପଚାରିଲେ ।

ସୁଶୀଲ ତାଙ୍କୁ ଠିକଣା କହିଲେ ।

ତାଙ୍କ ଘରେ କଏ କଏ ଥାଆନ୍ତି ?

କେହି ନାହିଁ । ସେ ଏକୁଟିଆ ରହେ ଏବଂ ସେ ବର୍ତ୍ତମାନ ପୋଲିସ ହାଜତରେ ଅଛି । ତାକୁ ଅଧଘଣ୍ଟା ପରେ ଛଡ଼ାଯିବ । ସେହି ସମୟ ଭିତରେ ତୁମେ ଏହି କାମ କରିବ ? କାରଣ ଯଦି ତୁମେ ଫ୍ଲାଟ ଭିତରେ ଥିବ ଏବଂ ସେ ଆସିଯିବ ତେବେ ସବୁ ଗୋଲମାଲ ହୋଇଯିବ ।

ଯଦି ତାଲା ସେତେ ମଜବୁତ୍ ନ ହୋଇଥିବ ମୁଁ ଆହୁରି ଶୀଘ୍ର ଏ କାମ କରିଦେବି ।

'ଗୁଡ୍ । ଯେତେବେଳେ ତୁମର କାମ ହୋଇଯିବ 'ବ୍ଲାଷ୍ଟ' ଅଫିସକୁ ଫୋନ୍ କରି କହିଦେବ ଯେ ତୁମେ କେଉଁଠି ସେ ଫଟୋ ଲୁଚେଇଛ ।'

'ଠିକ୍ ଅଛି ।'

ସୁଶୀଲ ସେଠାରୁ ଚାଲିଗଲେ ।

***

ସୁଶୀଲ ଅଫିସରେ ପହଞ୍ଚିବା ଦଶ ମିନିଟ ପରେ ଫୋନ ଘଣ୍ଟି ବାଜିଲା ସେ ରିସିଭର ଉଠାଇଲେ ।

ଜୌହର ଫୋନ କରିଥିଲା ।

ଜୌହର କହିଲା ଡ୍ରଇଂରୁମର ବଡ ଟେବୁଲ ତଳେ ଟେପ୍ ଦ୍ୱାରା ମୁଁ ସେ ଫଟୋକୁ ଲଗାଇ ଦେଇଛି ।

'ଥାନ୍‌କ୍‌ୟୁ ।'

ପାଞ୍ଚମିନିଟ ପରେ ପୁଣି ଫୋନ୍ ଆସିଲା ।

ଚନ୍ଦ୍ରଦୟାଳ ଫୋନ୍ କରିଥିଲେ ।

'ତାକୁ ଛାଡ଼ି ଦିଆଯାଇଛି ଏବଂ ସେ ତା ଫ୍ଲାଟରେ ପହଞ୍ଚି ସାରିଛି । ସ୍ତ୍ରୀ ଲୋକ ହେଡକ୍ୱାର୍ଟରରେ ଅଛି । ଦୁଇ ଘଣ୍ଟା ପର୍ଯ୍ୟନ୍ତ ସେ ସେଠାରେ ଅଟକ ରହିବ ।

ଠିକ୍ ଅଛୁ । ମୁଁ କେଦାରନାଥ ପାଖକୁ ଫୋନ୍ କରୁଛୁ । ତୁମେ ମଧ୍ୟ ସେଠାରେ ପହଞ୍ଚ ।

'ଓ. କେ ।'

ସୁଶୀଲ କେଦାରନାଥଙ୍କ ଫ୍ଲାଟକୁ ଫୋନ୍ କଲେ ।

ସୁଶୀଲ ପଚାରିଲେ କିଏ, କେଦାର ନାଥ ?

କେଦାରନାଥ କହିଲେ— ହଁ — କିଏ ?

'ସୁଶୀଲ ।'

'ସୁଶୀଲ କୁମାର ଚକ୍ରବର୍ତ୍ତୀ ?

'ହଁ' ।

ସେଇ ବ୍ଲାଷ୍ଟବାଲା ?

କ'ଣ ଚାହଁ ?

'ତୁମ ସହିତ ଦେଖା କରିବା ପାଇଁ ଚାହୁଁଛୁ ।'

ବର୍ତ୍ତମାନ ?

ହଁ ମୁଁ ତୁମ ଫ୍ଲାଟକୁ ଆସୁଛୁ ।

କିନ୍ତୁ କାହିଁକି ଦେଖା କରିବାକୁ ଚାହୁଁଛ ?

ମୁଁ ତୁମ ସହିତ ତ୍ୟାଗୀ ବିଷୟରେ କଥାବାର୍ତ୍ତା ହେବାକୁ ଚାହୁଁଛୁ । ସେ ବିଷୟରେ ମୋହନଲାଲ ଜୋଶୀଙ୍କର ମଧ୍ୟ ଆଲୋଚନା କରିବାକୁ ଚାହାନ୍ତି ତେଣୁ ତାଙ୍କୁ ମଧ୍ୟ ଫୋନ୍ କରି ତୁମ ଫ୍ଲାଟକୁ ଯିବାକୁ କହୁଛୁ ।

'କିନ୍ତୁ ମୁଁ ତୁମର କୌଣସି କଥା ଶୁଣିବାକୁ ଚାହେଁ ନା '

ତୁମ ଖୁସି । ଯଦି ତୁମେ ନ ଶୁଣିବ ବାଧ୍ୟ ହୋଇ ଏହି କଥା ମୋତେ ପୋଲିସକୁ କହିବାକୁ ପଡ଼ିବ । ମୁଁ ଚାହୁଁଥିଲି ପ୍ରଥମେ ତୁମେ ଶୁଣି ଥାଆନ୍ତ, ଯଦି ତୁମେ ନ ଚାହୁଁଛ ତେବେ ମୁଁ ପୋଲିସ ପାଖକୁ ଯିବି ।

'ମୁଁ ବାହାରକୁ ଯିବି । ମୋ ପାଖରେ ଅଧିକ ସମୟ ନାହିଁ ।'

'ମୁଁ ଯାଉଛି ଯାଉଛି ଆସୁଛି ।'

'ଠିକ୍ ଅଛି ।'

ସୁଶୀଳ ଯୋହନଲାଲ ଜୋଶୀଙ୍କ ପାଖକୁ ଫୋନ୍ କଲେ । ଜୋଶୀ ଫୋନ୍ ଧରିବାରୁ ସେ କହିଲେ— ଜୋଶୀ, ମୁଁ ସୁଶୀଲ କହୁଛି ।

'କୁହ'— ଜୋଶୀ କହିଲେ ।

ତୁମେ ୧୫ ମିନିଟ ପରେ କେଦାରନାଥ ଫ୍ଲାଟରେ ମୋ ସହ ଦେଖା କରି ପାରିବ କି ?

କାହିଁକି ?

ସୁଶୀଲ କେଦାରନାଥଙ୍କୁ ଯେମିତି ଗୃହରେ କହି ଥିଲେ ତାଙ୍କୁ ମଧ୍ୟ କହିଲେ । ଶେଷରେ କହିଲେ ମୁଁ କେଦାରନାଥଙ୍କୁ କହିଦେଇଛି ଯେ ତୁମେ ସେଠାକୁ ଆସୁଛ । ମୋ କଥା ଶୁଣିଲେ ତୁମର ଭଲ ହେବ । ତୁମ ଖୁସି । ଯଦି ତୁମେ ଆସିବାକୁ ନ ଚାହଁ ତେବେ ଆସିବ ନାହିଁ । କିନ୍ତୁ ମୋତେ ପଛରେ କହିବ ନାହିଁ ଯେ ଏପରି ମାରାତ୍ମକ କଥା ପୋଲିସ ଯିବା ପୂର୍ବରୁ ମୋତେ କାହିଁକି କହିଲ ନାହିଁ ।

ଏମିତି କି କଥା ?

ସେଠାରେ ପହଞ୍ଚିଲେ ସବୁ କଥା ଜାଣି ପାରିବ । ଆଉ ଗୋଟିଏ କଥା ମନେ ରଖିବ । ହେଇପାରେ ମୋ କଥା ନ ଶୁଣିବା ଦ୍ଵାରା ତୁମେ ମଜୁମଦାରଙ୍କର କୋପଭାଜନ ହୋଇପାର । ଏହି ବୟସରେ ମଜୁମଦାରଙ୍କ ଗୋଡ ମଧ୍ୟ କହୁତ ଗମ୍ଭୀରକୁ ଚାଲିଯାଇଛି ଏବଂ ତୁମେ ତାଙ୍କ ପାଇଁ କାମ କରୁଛ । ତାପରେ ସୁଶୀଲ ଫୋନ୍ ରଖିଦେଲେ ।

ସୁଶୀଲ ସେହି ରିଭଲଭର ବାହାର କଲେ, ଯେଉଁଟା କି ଠାକୁରଙ୍କ ହତ୍ୟା ପରେ ସେ ନିଜ ପକେଟରେ ରଖି ବୁଲୁଥିଲେ । ସେ ରିଭଲଭର ଖୋଲି ୫ଟି ଗୁଳି ବାହାର କରି ଟେବୁଲ ଉପରେ ରଖିଦେଲେ ଏବଂ ରିଭଲଭରକୁ ବନ୍ଦ କରି ପ୍ୟାଣ୍ଟର ବେଲ୍ଟରେ ଖୋସି ଦେଲେ ।

ସେ ମଲ୍ଲିକବାବୁଙ୍କ ଅଫିସକୁ ଗଲେ ।

ନମସ୍କାର କରି ସୁଶୀଲ କହିଲେ— ମୁଁ ଗୋଟିଏ ଯୋଜନା କରିଛି ଯଦ୍ୱାରା କି ଠାକୁରଙ୍କ ହତ୍ୟାର ପର୍ଦ୍ଦା ଉଠିପାରିବ ।

ଯୋଜନା ? ମଲ୍ଲିକ ବାବୁ ପଚାରିଲେ ।

'ଆଜ୍ଞା ହଁ । ତାହାର ଆଧାର ହେଉଛି ବ୍ଲଫ, କିନ୍ତୁ ମୋର ଆଶା ବ୍ଲଫ ଦ୍ୱାରା ହିଁ କାମ ହେବ ।

'କୁହ ।'

କହିବାର କିଛି ନାହିଁ । ମୁଁ ଯେଉଁ ଡ୍ରାମା କରିବାକୁ ଯାଉଛି ସ୍କ୍ରିପ୍ଟରେ କେତେବେଳେ କ'ଣ ବଦଳିପାରେ । ମୁଁ ବର୍ତ୍ତମାନ କେଦାର-ନାଥଙ୍କ ଫ୍ଲାଟକୁ କେଦାରନାଥ ଓ କୋଶୀଙ୍କ ସହ ସାକ୍ଷାତ କରିବାକୁ ଯାଉଛି । ମୋର ଆଶା ବ୍ଲଫ୍ ମାରି ସେ ଦୁହିଁଙ୍କ ମୁହଁରୁ ଏପରି କେତେକ କଥା ବାହାର କରିବି, ଯାହାକୁ ଶୁଣିବାକୁ ଇନ୍ସପେକ୍ଟର ପ୍ରଦ୍ୟୁମ୍ନଦୟାଲ ବ୍ୟସ୍ତ ଅଛନ୍ତି ।

'ତୁମ ପ୍ୟାଣ୍ଟର ବେଲ୍ଟରେ କ'ଣ ଦିଶୁଛି ?'

ସୁଶୀଲ ଚମକି ପଡ଼ିଲେ । ସୁଶୀଲ କୋଟଦ୍ୱାରା ରିଭଲଭରକୁ ଭଲ ଭାବେ ଢାଙ୍କି ଦେଲେ ।

ରିଭଲଭର ?

ସୁଶୀଲ ହଁ ଭରିଲେ ।

ତୁମେ କ'ଣ କୌଣସି ହତ୍ୟାକାଣ୍ଡ ଡ୍ରାମା କରିବାକୁ ଯାଉଛ ?

ଆଜ୍ଞା ନାଁ । ଭଗବାନ କରନ୍ତୁ ସେପରି ସମୟ ନ ଆସୁ । ରିଭଲଭର ଖାଲି ଅଛି । ମୁଁ ଜାଣିଶୁଣି ଖାଲି କରିଛି, କାଳେ ଠାକୁରଙ୍କ ମୃତ୍ୟୁର ପ୍ରତିଶୋଧ ନେବା ପାଇଁ କାହା ଉପରେ ଗୁଳି ଚାଲିଯିବ । ରିଭଲଭର ଦେଖାଇ ଧମକାଇବା ମୋର ଉଦ୍ଦେଶ୍ୟ ।

ତୁମେ ଏକା ଯାଅ ନାହିଁ । ତୁମେ ନିମାଣୀକୁ ସାଙ୍ଗରେ ନେଇ-ଯାଅ ।

ମୋର କିଛି ଆପତ୍ତି ନାହିଁ ।

ମଲ୍ଲିକବାବୁ ନିମାଣୀକୁ ତାଙ୍କ ସବୁ କଥା କହିଲେ ।

ନିମାଣୀ କହିଲେ ଏ ତ ଭଲ କଥା —ମୁଁ ତ କହୁଛି ଠାକୁରର ହତ୍ୟାକାରୀକୁ ଧରିବା ଉଚିତ୍ । କିନ୍ତୁ ତୁମେ କ'ଣ କରିବ ?

ବର୍ତ୍ତମାନ କିଛି କୁହାଯାଇ ପାରିବନାହିଁ । ମୋ ମୁଣ୍ଡରେ ଗୋଟିଏ ଥିଓରି ଅଛି ମୁଁ ତାକୁ ବ୍ୟବହାର କରିବାକୁ ଚାହେଁ । ତୁମେ କେଦାରନାଥଙ୍କ ଫ୍ଲାଟକୁ ମୋ ସାଙ୍ଗରେ ଚାଲ ତା'ପରେ ଦେଖିବ ।

ନିମାଣୀ ହଁ ଭରିଲେ ।

ତା'ପରେ ଦୁହେଁ ସେଠାରୁ ଗଲେ ।

***

ଅନ୍ଧାରରାତି ଏବଂ ଥଣ୍ଡାପବନ ବହୁଥିଲା । କେଦାରନାଥ ଫ୍ଲାଟର ସାମନାରାସ୍ତା ଶୁନ୍‌ଶାନ୍ ଥିଲା । ସୁନୀଲ ଓ ନିମାଣୀ ରାସ୍ତା ମୋଡ ପାଖରେ ଟ୍ୟାକ୍ସିରୁ ଓହ୍ଲାଇ ଚାଲିଚାଲି ଆଗକୁ ଗଲେ ।

ପ୍ରଭୁଦୟାଲ କିମ୍ବା ତାଙ୍କର କୌଣସି ଲୋକ ଦେଖାଯାଉ ନଥିଲେ । କିନ୍ତୁ ସୁନୀଲଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା ଯେ ପ୍ରଭୁଦୟାଲ ପାଖରେ କେଉଁଠି ହେଲେ ଥିବେ ଏବଂ ସେ କେଦାରନାଥଙ୍କ ଫ୍ଲାଟ ଭିତରକୁ ଯିବା ପରେ ସେ ନିଶ୍ଚୟ ଫ୍ଲାଟର ବାହାରେ ପହଞ୍ଚିବେ ।

ଅନ୍ଧାରରେ ସିଡିରେ ଯାଇ ଦୁଇମହଲା ଉପରେ ପହଞ୍ଚିଲେ ।

ସୁନୀଲ କେଦାରନାଥଙ୍କ କବାଟ ଠକ୍ ଠକ୍ କଲେ ।

ସାଙ୍ଗେ ସାଙ୍ଗେ କବାଟ ଖୋଲିଲା । ଖଟ ଉପରେ କେଦାରନାଥ ବସିଥିଲେ । ସେ ସୁନୀଲ ଆଡକୁ ଅନାଇ ବିଚଳିତ ହୋଇ ନିମାଣୀ ଆଡକୁ

ଅନାଇଲେ ।

ସେ କହିଲେ— ତୁମ ସହିତ ଆଉ କେହି ଆସିବା କଥା ତୁମେ ତ ଫୋନରେ କହି ନଥିଲ ।

ସୁଶୀଲ କହିଲେ—ସେଥିରେ କ'ଣ ଅଛି । ଏ ମୋର ଆସିଷ୍ଟାଣ୍ଟ ଦାଉଦ ଏଜେଣ୍ଟର କର୍ମିମାଣୀ ।

କେଦାରନାଥ କହିଲେ—'ଜାଣେ ।'

ଦୁହେଁ ଭିତରକୁ ଗଲେ ।

ସୁଶୀଲ ଡ୍ରଇଂରୁମ୍‌ର ଚାରିଆଡେ ଆଖି ବୁଲାଇଲେ ।

ସେ ପଚାରିଲେ—ଜୋଶୀ ଆସି ନାହିଁ ?

କେଦାରନାଥ କହିଲେ—ନାଁ । ତୁମେମାନେ ବସ ।

ସୁଶୀଲ ବଡ ଟେବୁଲ ପାଖରେ ଚଉକି ପକାଇ ବସିଲେ ।

କେଦାରନାଥ କହିଲେ— ବର୍ତ୍ତମାନ କ'ଣ କହିବାର ଅଛି କୁହ ?

ସୁଶୀଲ କହିଲେ—ଧର୍ଯ୍ୟ ଧର । ଜୋଶୀ ଆସୁ ।

ସେ କ'ଣ ଆସିବ ?

ସେହି ସମୟରେ କବାଟରେ ଠକ୍ ଠକ୍ ଶୁଭିଲା । କେଦାରନାଥ କବାଟ ଖୋଲିଲେ । ଜୋଶୀ ଭିତରକୁ ଆସିଲେ ।

ସେ କବାଟ ପାଖରେ ଠିଆ ହୋଇପଡ଼ି କହିଲେ—କ'ଣ କାମ ଅଛି ?

ସୁଶୀଲ କହିଲେ—ଆସ, ବସ କାମ ଜଣା ପଡ଼ିଯିବ ।

ଜୋଶୀ କବାଟ ପାଖରେ ଠିଆ ହୋଇ ରହିଲା । ତା'ପରେ ଯାଇ ସୋଫା ଉପରେ ବସିଲା । ସେ ପ୍ରଶ୍ନବାଚକ ଦୃଷ୍ଟିରେ ସୁଶୀଲକୁ ଚାହିଁଥାଏ ।

ସୁଶୀଲ କହିଲେ— ସେହି ଲୋକମାନଙ୍କୁ ସନ୍ଦେହ ମୁଁ କରୁଛି, ଯେଉଁମାନେ କି ତ୍ୟାଗୀ, ଠାକୁର ଓ ନାରାୟଣକୁମାରଙ୍କୁ ହତ୍ୟା କରିଛନ୍ତି । କହିବ ?

ଜୋଶୀ ଶୁଷ୍କ ସ୍ୱରରେ କହିଲେ—କୁହ ।

କାଲି ଦୁଇପ୍ରହର ପରେ ମୁଁ ତ୍ୟାଗୀ ଅଫିସରେ ପୋଲିସ ଦେଖିଥିବା ପୂର୍ବରୁ କେତେକ ଫଟୋ ଉଠାଇଥିଲି । ତା' ପୂର୍ବରୁ କମର୍ସିଆଲ ଷ୍ଟ୍ରିଟ୍‌ରେ ଯାଉଥିବା ତାଜିସ୍ୱା କୁଲୁସର ଫଟୋ ଉଠାଇଥିଲି, ଯାହାକୁ କରୁମେ ଦୁହେଁ ଦେଖିଥିଲ । ସେଇ ଫଟୋରେ ମଧ୍ୟ କେତେକ ଲୋକ ଥିଲେ ତାଙ୍କ ନାଁ କହିବାକୁ ଗୃହେଁନାହିଁ । କିନ୍ତୁ ସେଥିରେ କେଦାରନାଥ, ତୁମେ ଓ ଦମୟନ୍ତୀ ଜୋଶୀ ଶ୍ରୀନିବାସ ହାଉସର ବାହାରକୁ ଆସିବାର ଦେଖା ଯାଉଥିଲି ଏବଂ ଜୋଶୀ, ତୁମେ ସ୍ୱସ୍ତା ସେ ପାଖ କୋଠାର କବାଟ ପାଖରେ ଠିଆ ହୋଇ ଏହି ଦୁହିଁଙ୍କୁ ଦେଖିବାର ଦେଖା ଯାଉଥିଲ । ଫଟୋରେ ଫୁଟ୍‌ପାଥ୍‌ରେ ଯାଉଥିବା ନାରାୟଣ କୁମାରଙ୍କ ଫଟୋ ମଧ୍ୟ ପରିଷ୍କାର ଭାବେ ଉଠିଥିଲା, କେଦାରନାଥ, ତୁମେ ପୋଲିସ କବଳରୁ ବର୍ତ୍ତମାନ ଯେଉଁ ନାନ୍ତ ଏଇଥିପାଇଁ ରକ୍ଷା ପାଇଛ ଯେ ଜୋଶୀର ସ୍ତ୍ରୀ ନିଜ କଥାରୁ ଟଳୁ ନାହାନ୍ତି, ସେ କହନ୍ତି ତୁମେ ଯେତେବେଳେ ତାଙ୍କ ସହିତ ଥିଲ । ଜୋଶୀ ସାମନା କୋଠାରୁ ତୁମକୁ ଦେଖୁଥିଲେ, କିନ୍ତୁ ମୋତେ ଏ କଥା ଜଣା ନାହିଁ ଯେ ସେ କେତେବେଳଠାରୁ ସେଠାରୁ ଉପସ୍ଥିତ ଥିଲେ । ସେ ବୋଧହୁଏ ଅନେକ ଆଗରୁ ସେଠାରେ ଉପସ୍ଥିତ ଥିଲେ ଏବଂ ତୁମର କାର୍ଯ୍ୟକଳାପକୁ ଲକ୍ଷ୍ୟ କରୁଥିଲେ । କିନ୍ତୁ ସେ ପୋଲିସ ସାମନାରେ ସ୍ୱୀକାର କରୁନାହାନ୍ତି । ପୋଲିସ ବର୍ତ୍ତମାନ ସୁଦ୍ଧା ଏହି କାରଣକୁ ଆଖି ଆଗରେ ରଖି ଜୋଶୀ ଉପରେ ଚାପ ପକାଇ ନାହାନ୍ତି ।

ଜୋଶୀ କହିଲେ - ହଁ କୁହ ।

ଅଚଳା ମଜୁମଦାର ତାଙ୍କ ବାପାଙ୍କର ଶଭଲଭର ନେଇ ତ୍ୟାଗୀଠାରୁ ସେହି ଚଠି ଗୁଡ଼ିକ ହାସଲ କରିବାକୁ ଯାଇଥିଲେ, ଯେଉଁ ଚଠି ଦ୍ୱାରା କି ସେ ଅଚଳାଙ୍କୁ ବ୍ଲାକମେଲିଂ କରୁଥିଲା । ସେଠାରେ ଏପରି ପରିସ୍ଥିତି ସୃଷ୍ଟି ହେଲା, ଯଦ୍ୱାରା କି ତାଙ୍କୁ ତ୍ୟାଗୀ ଉପରକୁ ଗୁଳି ଚଳାଇବାକୁ ପଡ଼ିଲା, କିନ୍ତୁ ଦୁର୍ଭାଗ୍ୟବଶତଃ ଦୁଇଟି ଯାକ ଗୁଳି ଲକ୍ଷ୍ୟ ଭ୍ରଷ୍ଟ ହେଲା । ତ୍ୟାଗୀ

ଡରିଗଲ । ସେ ଜାଣିଥିଲା ଯେ ଅଚଲା ଯେଉଁକ ବେଳ ପର୍ଯ୍ୟନ୍ତ ଗୁଳି ଚଳାଉଥିବ ସେତେବେଳ ପର୍ଯ୍ୟନ୍ତ ସେ ତାଙ୍କ ଗୁଳିର ଶିକାର ନ ହେବ । ସେଥିପାଇଁ ସେ ଅଭିନୟ କରି ତଳେ ପଡ଼ିଗଲେ । ତ୍ୟାଗୀ ମରି ଯାଇଛି ଭାବି ଅଚଳା ରିଭଲଭର ସେଠାରେ ପକାଇ ଦେଇ ପଳାଇଲେ । ତାପରେ ମୋ ସହିତ ଦେଖା ହେଲା । ତାଙ୍କଠାରୁ ସବୁକଥା ଶୁଣିବା ପରେ ମୁଁ ତ୍ୟାଗୀ ଅଫିସରେ ପହଞ୍ଚିଲି । କିନ୍ତୁ ରିଭଲଭର ସେଠାରେ ନ ଥିଲା ।

ସୁନୀଲ ସବୁ କଥା କହିବା ପରେ ଶ୍ରୋତାଙ୍କ ଉପରେ ବିଶେଷ ପ୍ରଭାବ ପଡ଼ିବାର ଦେଖି ପାରିଲେ ନାହିଁ ।

ତ୍ୟାଗୀ ଖୁବ୍ ବ୍ଲାକ୍ ମେକ ଥିଲା ଏବଂ ବ୍ଲାକମେଲର ଥିଲା । ସୁନୀଲ କହିଲେ – ସେ ମଜୁମଦାରଙ୍କୁ ଆଗରୁ ଅନେକ ବହୁତ ବ୍ଲାକ୍‌ମେଲ କରୁଥିଲା । ତ୍ୟାଗୀ ଉପରେ ମଜୁମଦାରଙ୍କ ଝିଅ ଗୁଳି ଚଳାଇଥିଲେ । ଯାହା ପ୍ରମାଣ ଅଫିସ କାନ୍ଥରେ ପରିଷ୍କାର ଦେଖା ଯାଉଥିଲା ଏବଂ ମଜୁମଦାରଙ୍କ ରିଭଲଭର ତାଙ୍କ ପାଖରେ ଥିଲା । ସେ ମଜୁମଦାରଙ୍କୁ ଫୋନ୍ କରି ତାଙ୍କୁ ନିଜ ଅଫିସକୁ ଡାକିଲା ।

ସୁନୀଲ କେଦାରନାଥଙ୍କ ଆଡ଼କୁ ଅନାଇ କହିଲେ – 'ତୁମେ ତ ବ୍ଲାକ୍‌ମେଲିଂରେ ତ୍ୟାଗୀର ପାର୍ଟନର ଥିଲ । ତୁମେ କ'ଣ ତ୍ୟାଗୀର ଏ ନୂଆ ପ୍ଲାନର ଖବର ଜାଣିଥିଲ ।'

କେଦାରନାଥ କହିଲେ—ମୁଁ କିପରି ଜାଣିବି ?

କିନ୍ତୁ ଯେତେବେଳେ ଗୁଳି ଚାଲିଥିଲା ତୁମେ ସେତେବେଳେ ଉପରେ ତୁମ ଅଫିସରେ ଥିଲ । ଗୁଳି ଫୁଟିବାର ଶବ୍ଦ ତୁମେ ନିଶ୍ଚୟ ଜାଣିଥିବ ଏବଂ ଶବ୍ଦ ଶୁଣି ତୁମେ ନିଶ୍ଚୟ କ'ଣ ହେଲା ବୋଲି ଦେଖିବାକୁ ସେଠାରେ ପହଞ୍ଚିଥିବ ।

କେଦାରନାଥ ନିରୁତ୍ତର ରହିଲେ । ସୁନୀଲ ମଧ୍ୟ ତାଙ୍କ ଠାରୁ ଉତ୍ତର ଆଶା କରୁ ନ ଥିଲେ ।

ସୁନୀଲ କହିଲେ— ହତ୍ୟାକାରୀଙ୍କୁ ଏହା ଜଣାଥିଲା ଯେ ତ୍ୟାଗୀ ମଜୁମଦାରଙ୍କ ପାଖକୁ ଫୋନ୍ ଧରିଥିଲେ । ସେଥିପାଇଁ ସେ ସେହି ସମୟକୁ ମଧ୍ୟ ନିଜ ଯୋଜନାର ଗୋଟିଏ ଅଙ୍ଗ କରି ନେଇଥିଲେ । ଏହା ମଧ୍ୟ ଜଣାଯାଉଛି ଯେ ହତ୍ୟାକାରୀ ତ୍ୟାଗୀର ଅନ୍ତରଙ୍ଗ ବନ୍ଧୁ ଥିଲା ଓ ସେଥିପାଇଁ ସେ ତ୍ୟାଗୀ ଅଫିସର ହେଉଥିବା ପରେ ତ୍ୟାଗୀ ତାକୁ ମଜୁମଦାରଙ୍କ ଟେଲିଫୋନ୍ ବିଷୟରେ କହି ଦେଇଥିଲା । ହତ୍ୟାକାରୀ ସେହି ସମୟରେ ହୁଏତ ତ୍ୟାଗୀକୁ ହତ୍ୟା କରିବା ମନୋଭାବ ନେଇ ନ ଆସିଥାଇପାରେ, କିନ୍ତୁ ତା ମନରେ କେବେ ହେଲେ ମଧ୍ୟ ତ୍ୟାଗୀକୁ ହତ୍ୟା କରିବାର ଭାବ ନିଶ୍ଚୟ ଥିଲା । ସେହି ସମୟରେ ତ୍ୟାଗୀକୁ ହତ୍ୟା କରିବାର ସୁଯୋଗ ଖୁବ୍ ସୁରକ୍ଷିତ ଥିଲା । ଆଶ୍ଚର୍ଯ୍ୟ କଥା ଯେଉଁ ପରିସ୍ଥିତି ମଜୁମଦାରଙ୍କୁ ବ୍ଲାକମେଲ କରିବାର କାରଣ ଥିଲା । ସେହି ପରିସ୍ଥିତି ତ୍ୟାଗୀର ମୃତ୍ୟୁର କାରଣ ହେଲା ହତ୍ୟାକାରୀ ମଜୁମଦାରଙ୍କ ରିଭଲଭର ଉଠାଇଲା ଏବଂ ତ୍ୟାଗୀକୁ ଗୁଳି ମାରିଦେଲା । ରିଭଲଭର ହତ୍ୟାକାରୀର ନ ଥିଲା । ଅନେକ ହିଁ ହେଲା ଯେ ସେ ହତ୍ୟା କରିଛି । ତାର ମେକ୍‌ଅପ୍‌କକ୍ଷ ରୁମ୍‌ରେ ହେଉଥିଲା ଓ ଅଧିକାଂଶ ଘଟଣାସ୍ଥଳରେ ଟିଅର ବାପା ହେଉଥିବାର ଥିଲା । ହତ୍ୟାକାରୀ ସୁରକ୍ଷିତ ଥିଲା । ସେହି ସମୟରେ ତା ଉପରେ କୌଣସି ବିପଦ ଆସି ପାରି ନ ଥିଲା ।

ସୁନୀଲ ଦେଖିଲେ ହିମାଂଶୀ ନିଜ ମୁହଁରୁ ଝାଳ ପୋଛୁଛନ୍ତି ଏବଂ ଯେତେବେଳେ କେଦାରନାଥ ଓ ଜ୍ୟୋତିଶୀଙ୍କର ଚେହେରା ପୂର୍ବାପେକ୍ଷା ମଳିନ ଦେଖା ଯାଉଥିଲା ।

ସୁନୀଲ କହିଲେ— ତ୍ୟାଗୀ ହତ୍ୟାର ସବୁଠୁ ବଡ଼ିଆ କଥା ଏହି ଯେ ସନ୍ଦେହ କରି ହତ୍ୟାକାରୀ ବ୍ୟତୀତ କେତେକ ଲୋକ ସେଠାକୁ ଆସି ଯାଇଥିଲେ । ତୁମେ'ଶ ମଧ୍ୟ ତ୍ୟାଗୀକୁ କିଛି କହିବା ଉଦ୍ଦେଶ୍ୟରେ ଘଟଣାସ୍ଥଳରେ ପହଞ୍ଚିଥିଲା । ସେ ତ୍ୟାଗୀ ମରି ହେଉଥିବାର ଦେଖିଲା, କିନ୍ତୁ ସେ ତାକୁ ଚିହ୍ନିନାହିଁ । ଟୁକୁଟରେ ସେଠାରେ କ'ଣ ହୁଏ ସେ ତାହା ଜାଣି-

ନଥିଲ । ତେଣୁ ସ୍ୱାଭାବିକ ଭାବେ ଭିତରର ସେ ଦେଖିପାରି ନ ଥିଲ ଏବଂ ମେକଅପ୍‌ବକ୍ସ ମଧ୍ୟ ସେଠାରେ ପଡ଼ିଥିବାର ସେ ଦେଖି ନଥିଲ । କେଦାରନାଥ ସେହି ସମୟରେ ତୁମେ ସେଠି କୋଠାରେ ଥିଲ । ତୁମେ ପୋଲିସକୁ ଫୋନ କରି ଜଣାଇଥିଲ ଯେ ମୁଁ ତ୍ୟାଗୀ ଅଫିସରେ ପଶି ଫଟୋ ଉଠାଉ ଥିଲି ଏବଂ ତୁମେ ମୋତେ ତ୍ୟାଗୀ ଅଫିସରେ ଦେଖିଥିଲ । ଏହା ତାଙ୍କର ଫଟୋ ଉଠାଇବାର ପର ଘଟଣା । ତୁମେ ଥରେ ଦମୟନ୍ତୀ ଜୋଶୀଙ୍କ ସହିତ କୋଠାରୁ ବାହାରକୁ ଚାଲି ଯାଇଥିଲ ଏବଂ ମୁଁ ସେଠାରେ କ'ଣ କରୁଛି ଜାଣିବା ପାଇଁ ତୁମେ ଫେରି ଆସିଥିଲ ଏବଂ ତୁମେ ଜାଣି-ପାରିଥିଲ ଯେ ମୁଁ କ'ଣ କରୁଥିଲି ।

କେଦାରନାଥ କହିଲେ—ମିଷ୍ଟର ! ତୁମର ମତଲବ କ'ଣ ? ମୋର ଫ୍ଲାଟରେ ବସି ମୋରି ଆଗରେ ତ୍ୟାଗୀ ହତ୍ୟାର ଦୋଷ ମୋତେ ଦେଉଛ ?

ଜୋଶୀ କହିଲେ— ତାଆପି ତାଙ୍କୁ କହିବାକୁ ଦିଅ ।

କେଦାର ନାଥ କହିଲେ - ତୁମେ ମୁହଁ ବନ୍ଦ କର ।

ସୁଶୀଲ କହିଲେ— ଜୋଶୀ ଠିକ୍ କହୁଛନ୍ତି । ଆଗକୁ ଆହୁରି ମଜା କଥା ଅଛି । ପ୍ରଥମେ ସମ୍ପୂର୍ଣ୍ଣ କାହାଣୀ ଶୁଣ । ତାପରେ ଯଦି ହେବ ମୋତେ ଫ୍ଲାଟରୁ ବାହାରକୁ ଫିଙ୍ଗି ଦେବ ।

କେଦାରନାଥ ଚମକି ଉଠିଲେ ।

ସୁଶୀଲ କହିଲେ— ତୁମେ ଏହାକୁ କାହାଣୀ ବୋଲି ଭାବିପାର । କିନ୍ତୁ ମାନିବାକୁ ପଡ଼ିବ ଯେ ଏହା ଖୁବ୍ ମଜାଦାର କାହାଣୀ ।

କେଦାରନାଥ କହିଲେ— କିନ୍ତୁ ଏହା ମିଛ କାହାଣୀ ।

ତା ହେଲେ ସତ କ'ଣ ତୁମେ କହିଦିଅ କ'ଣ ହୋଇଥିଲା ?

ତୁମର କଥା ସମାପ୍ତ କର ।

କେଦାରନାଥ, ବର୍ତ୍ତମାନ ପର୍ଯ୍ୟନ୍ତ ତୁମେ କେବଳ ଦମୟନ୍ତୀ ଜୋଶୀର ଯୋଗୁ ରକ୍ଷା ପାଇଛ ।

ଏକଥା କେମିତିଥର କହୁଛ ?

ଯଦି ଦମୟନ୍ତୀ କୋଶୀଙ୍କ କଥା ମିଛ ପ୍ରମାଣିତ ହୁଏ, ତେବେ ତୁମେ ଫାଶୀ ଖୁଣ୍ଟରେ ଚଢ଼ିବ । ଦମୟନ୍ତୀ କୋଶୀ ତୁମ ପାଇଁ କହିଥିବା ମିଛ କଥାକୁ ସ୍ୱୀକାର କରାଇବା ପାଇଁ ପୋଲିସ ପ୍ରଚେଷ୍ଟା କରୁଛନ୍ତି ଏବଂ ତୁମେ ଜାଣ ଯେ ବର୍ତ୍ତମାନ ଝିଅ ଦମୟନ୍ତୀ କୋଶୀ ପୋଲିସ ହେଡ୍‌କ୍ୱାର୍ଟରରେ ଅଛନ୍ତି । ପୋଲିସ ଉଚ୍ଚପଦାଧିକାରୀ ତାଙ୍କୁ ଅନେକ ପ୍ରଶ୍ନ ପଚାରୁଛନ୍ତି ଏବଂ ସେ ଯେ କୌଣସି ସମୟରେ ସ୍ୱୀକାର କରିବେ ଯେ ତୁମ ପାଇଁ ମିଛ କହିଥିଲେ । ହତ୍ୟା ସମୟରେ ତୁମେ ତାଙ୍କ ସହ ନ ଥିଲ ।

କେଦାରନାଥ କହିଲେ— ଏହା ମିଛ କଥା ।

'ତୁମ ପୋଲିସ ହେଡ୍‌କ୍ୱାର୍ଟରକୁ ଫୋନ୍ କରି ବୁଝିନିଅ ।'

କେଦାରନାଥ କହିଲେ— ମୁଁ ଫୋନ୍ କରି ସତ କଥା ଜାଣିପାରିବି ।

'ତେବେ ଫୋନ୍ କର । କିଏ ମନା କରୁଛି ?'

କେଦାରନାଥ ଫୋନ ଉଠାଇଲେ ଏବଂ ନମ୍ବର ଡାଏଲ କରି କହିଲେ— ଆରେ, ଟିକିଏ ସନ୍ଧାନ ନେଇ କହ ଦମୟନ୍ତୀ କୋଶୀ ବର୍ତ୍ତମାନ ପୋଲିସ ହେଡ୍‌କ୍ୱାର୍ଟରରେ ଅଛି ?...... ଅଛି ? ଆଚ୍ଛା ! କେଉଁଠି ?... ଇନସ୍‌ପେକ୍ଟର ପ୍ରହ୍ଲାଦସ୍ୱାମୀଙ୍କ ରୁମରେ ? ଓ. କେ ଥ୍ୟାନ୍‌କ୍ୟୁ... ନା ସେମିତି କିଛି କଥା ନାହିଁ ।

ସେ ରିସିଭର ରଖି ଦେଲେ । ତାଙ୍କର ଚେହେରାରେ ଗମ୍ଭୀର ଚିନ୍ତା ଭାବ ପ୍ରକଟିତ ହେଲା ।

କେଦାରନାଥ କହିଲେ— ବହୁତ ହୋଇଗଲା, ଏଥର ତୁମେ ଏଠାରୁ ଯାଅ ।

ଉତ୍ସାହପୂର୍ଣ୍ଣ ସ୍ୱରରେ ସୁନୀଲ କହିଲେ— ଡରିଗଲ ?

ତୁମ ପରି ମୂର୍ଖକୁ କିଏ ଡରେ । ତୁମେ ତ ଗୋଟିଏ ପ୍ରେସ-ରିପୋର୍ଟର । ତୁମେ କ'ଣ ଭାବୁଛ ଯେ ଏହିପରି କଥା କହି ମୋତେ

ତ୍ୟାଗୀର ପ୍ରକୃତ ହତ୍ୟାକାରୀ ବୋଲି ପ୍ରମାଣିତ କରିବ ?

ମୋର ସେମିତି କିଛି ଇଚ୍ଛା ନାହିଁ । ତୁମେ ତ୍ୟାଗୀ ପରି ୧ ଜର୍ଜନ ଲୋକଙ୍କୁ ହତ୍ୟା କରିଲ ମଧ୍ୟ ମୋର କିଛି ନାହିଁ । କେବଳ ଠାକୁରର ହତ୍ୟା ବିଷୟରେ ମୁଁ ଦୁଃଖିତ । ସେ ମୋର ସହଯୋଗୀ ଥିଲା ଏବଂ ମୋର କାମ ଯୋଗୁଁହିଁ ତାର ଜୀବନ ଗଲା । ମୋର ବିଶ୍ୱାସ ଯେ ଯେଉଁ ଲୋକ ତ୍ୟାଗୀକୁ ହତ୍ୟା କରିଛି, ଠାକୁରକୁ ମଧ୍ୟ ସେଇ ହତ୍ୟା କରିଛି । ଠାକୁରର ହତ୍ୟାକାରୀକୁ ମୁଁ ଛାଡ଼ିବି ନାହିଁ । ମୁଁ ତାକୁ ଯେଉଁଠୁ ହେଉ ବାହାର କରିବାକୁ ପ୍ରତିଜ୍ଞା କରିଛି ।

ସୁଶୀଲ ଉଠି ଠିଆ ହେଲେ ସେ ପ୍ୟାଣ୍ଟର ପକେଟ୍‌ରୁ ରିଭଲଭର ବାହାର କଲେ ।

ସୁଶୀଲ ଗର୍ଜି ଉଠି କହିଲେ— 'କେଦାରନାଥ' । ତୁମେ ଯେମିତି ମୋ ବିଷୟରେ ପୋଲିସକୁ ଟିପ୍ପଣୀ ଦେଇଥିଲ, ସେହିପରି ତୁମ ବିଷୟରେ ଜଣାପଡ଼ିଛି ଯେ ଠାକୁର ହତ୍ୟା ତୁମେ କରିଥିଲ । ଯଦି ଏହା ସତ୍ୟ ତେବେ ଜାଣିବ ଯେ ତୁମର ଜୀବନକାଳ ସଂପୂର୍ଣ୍ଣ ହୋଇ ଯାଇଛି ।

କେଦାରନାଥ ଛକ୍‌ପକ୍ ହେଲେ । ପୋଲିଡର୍ ହୋଲ୍‌ଡରରେ ଥିବା ରିଭଲଭର ଆଡ଼କୁ ତାଙ୍କ ହାତ ଯାଉ ଯାଉ ଅଟକିଗଲା ।

ଜୋଶୀ ସ୍ଥିର ହୋଇ ବସି ପଡ଼ିଲେ ।

ନିର୍ମାଣୀ ଚେୟାରରୁ ଅଧା ଉଠି କହିଲେ— ସୁଶୀଲ, ହୁସିଆର ରୁହ ।

ସୁଶୀଲ ସତର୍କତା ଭରା ସ୍ୱରରେ କହିଲେ— କେହି ନିଜ ସ୍ଥାନରୁ ହଲିବ ନାହିଁ । ମୁଁ ଏହି ଫ୍ଲାଟ ଖାନତଲାସ କରିବାକୁ ଚାହେଁ ।

କେଦାରନାଥ କହିଲେ —ପୁଅ, ତୁମର ସମୟ ଆସିଯାଇଛି ।

ସୁଶୀଲ କହିଲେ— ମୋର ନା ତୁମର ।

କେଦାରନାଥ ଚୁପ୍ ରହିଲେ ।

ସୁଶୀଲ ଡ୍ରଇଂରୁମ୍ ଖାନତଲାସ ଆରମ୍ଭ କଲେ । ଅନେକ ସମୟ

ଖୋଜା ଖୋଜି କଲେ । ବାତାବରଣ ସସ୍‌ପେନ୍‌ସ ଥିଲା । ଯେପରି କାହାର ସନ୍ଦେହ ନ ହୁଏ ଯେ ଉକ୍ତ ଜିନିଷ କେଉଁଠୁ ମିଳିବ ।

କେଦାରନାଥ ଗମ୍ଭୀର ଥିଲେ । ତାଙ୍କର ଆଖି ସୁଶୀଲ ପିଛା କରୁଥିଲା ।

ସୁଶୀଲ ବର୍ତ୍ତମାନ ଏ ପରିସ୍ଥିତିରେ ଥିଲେ, ଯେଉଁଠାରେ ଜନିମାଣୀ ଓ ଡ୍ରଇଂ ରୁମରେ ବଣାଇ କାନ୍ଥ ତାଙ୍କର ଡାହାଣ ପଟେ ଥିଲା । କୋଣୀ ତାଙ୍କର ବାମ ପଟେ ଥିଲା ଓ କେଦାରନାଥ ସାମନାରେ ଠିଆ ହୋଇଥିଲେ । ବଡ ଟେବୁଲ ଆଡକୁ ସୁଶୀଲ ଅଗ୍ରସର ହେଲେ, କିନ୍ତୁ ସେ ଅନୁଭବ କଲେ ଯେ କେଦାରନାଥ ଆଡକୁ ପିଠି ନ ବୁଲାଇଲେ ସେ ଟେବୁଲ ଖାନ୍‌ତଲ୍ଲାସ କରି ପାରିବେ ନାହିଁ ।

ସୁଶୀଲ ଟେବୁଲ ପାଖକୁ ଗଲେ ।

କେଦାରନାଥ ସାପ ପରି ଗର୍ଜି ଉଠିକହିଲେ— ହାରାମଜାଦା, ତୁମେ କୌଣସି ଖେଲ ଖେଳୁଛ । ତୁମେ ମୋତେ ଫସାଇବା ପାଇଁ ଚେଷ୍ଟା କରୁଛ । ମୁଁ ତୁମର ଏପରି ଅବସ୍ଥା କରିବି ଯେ ସାରାଦିନ ପାଇଁ ମନେ ରହିବ ।

କୋଣୀ କହିଲା— କାହିଁକି ପାଟିକରୁଛ, କିଛି ସମସ୍ତ ଚୁପ୍ ରହି ପାରୁନ ।

ମୁଁ ତୁମକୁ ମଧ୍ୟ ଦେଖିନେବି ।

କୋଣୀ କହିଲା— ଦେଖି ନେବୁ । ବହୁତ ଲୋକ ମୋତେ ଦେଖି ସାରିଛନ୍ତି ଆଉ ଜଣେ ଦେଖିବ ସେଥିରେ କ'ଣ ଅଛି ।

ସୁଶୀଲ ଜନିମାଣୀକୁ କହିଲେ— ଜନିମାଣୀ, ଟିକଏ ସାହାଯ୍ୟ କର ।

ଜନିମାଣୀ କହିଲେ – 'ମୁଁ ?'

ତୁମେ ଟିକଏ ଲଭଲଭର ଧର ଏବଂ ମୁଁ ଟେବୁଲ ଖାନତଲାସ କରେ ।

ରୁକ୍ମିଣୀ ଠିଆ ହେଲେ । ସୁଶୀଲ ତାଙ୍କ ହାତକୁ ଶଭଲଭର ଦେଇ ଟେବୁଲ ପାଖକୁ ଗଲେ । ସେ ପ୍ରଥମେ ବଡ଼ ଟେବୁଲର ଡ୍ରୟର ଖୋଲି ଦେଖିଲେ, ତାପରେ ଟେବୁଲ ତଳେ ହାତ ମାରିଲେ ଏବଂ ଫଟୋ ଗୁଡ଼ିକ ପାଇଲେ, ଯାହାକୁ କି ତାଙ୍କ କହିବା ଅନୁସାରେ କୋହ୍ନର ସେଠାରେ ଲୁଚାଇ ରଖିଥିଲା ।

ସୁଶୀଲ ସ୍ପଷ୍ଟ ସ୍ୱରରେ କହିଲେ— କାମ ହୋଇଗଲା ।

କେଦାରନାଥ କହିଲେ— କ'ଣ ହୋଇଗଲା ?

ସୁଶୀଲ କହିଲେ - ମୁଁ ତୁମକୁ ଆଗରୁ କହିଥିଲି ନା ତୁମ ବିପକ୍ଷରେ ମୁଁ ଗୋଟିଏ ଗୁପ୍ତ ଖବର ପାଇଛି । ଆଉ ମଧ୍ୟ ମୁଁ କହିଥିଲି ଯଦି ଖବର ସତ୍ୟ ହୁଏ ତୁମେ ଯାଣିବ ତୁମର ସମୟ ପାଖରେ ଆସିଛି ।
କେଦାରନାଥ— ସୁଶୀଲ ଡ୍ରମାଟିକ ପୋଜ୍‌ରେ ଫଟୋ ଧରିଥିବା ହାତ ତାଙ୍କ ଆଗରେ ଦେଖାଇ କହିଲେ - ଏହା ତୁମର ସମସ୍ତ କାରସାଦିର ଜ୍ୱଳନ୍ତ ପ୍ରମାଣ ଯାହାକୁ କି ତୁମେ ଏହି ଟେବୁଲ ତଳେ ଲୁଚାଇ ରଖିଥିଲ । ଏଇ ଫଟୋଯୋଗୁ ଠାକୁରର ହତ୍ୟା ହୋଇଥିଲା । ଏହାକୁ ଲୁଚାଇ ରଖିବା ଅପେକ୍ଷା ନଷ୍ଟ କରିଦେବା ଉଚିତ୍ ଥିଲା । ଏହି ଫଟୋ ତୁମ ପାଖରୁ ମିଳିବାରୁ ପ୍ରମାଣିତ ହେଉଛି ଯେ ତୁମେ ଠାକୁରକୁ ହତ୍ୟା କରିଛ । ବୋଧହୁଏ ତୁମର ଲୋଭ ତୁମକୁ ବାଧ କରିଥିଲା ଏହି ଫଟୋ ନଷ୍ଟ ନ କରିବାପାଇଁ । ଏହି ଫଟୋ ଦ୍ୱାରା ତୁମେ ବୋଧହୁଏ ଅନ୍ୟକୁ ବ୍ଲାକମେଲ କରିବାର ଇଚ୍ଛା କରିଥିଲ । କିନ୍ତୁ ବର୍ତ୍ତମାନ ତୁମର ସବୁ ଆଶା ଚିରଦିନ ପାଇଁ ଭୁଲିଯାଅ । ଏହି ଯେଉଁ ଫଟୋ ଦୁଇଜଣ ସାକ୍ଷୀଙ୍କ ସମ୍ମୁଖରେ ତୁମ ତୁମରି ବାହାର କରିଛୁ ସେ ତୁମକୁ ଫାଶୀ ଖୁଣ୍ଟ ପର୍ଯ୍ୟନ୍ତ ନେଇଯିବ କେଦାରନାଥ ।

କେଦାରନାଥ ଆତଙ୍କିତ ସ୍ୱରରେ କହିଲା— ଏହା ମିଛ । ମୋତେ ଜାଣିକି ଫସାଉଛ ।

ରୁକ୍ମିଣୀ କହିଲେ — ତୁମେ କପରି ଜାଣିଲ ଯେ ଏଇ ଫଟୋ

ତାଳସ୍ୱାର । ତୁମେ ତ ଏହାକୁ ଖୋଲି କରି ଦେଖି ନାହଁ ।

ଯଦି ନ ଦେଖିଛ, ବର୍ତ୍ତମାନ ଦେଖି ନେଉଛ । କିନ୍ତୁ ଯେପରି ଭାବେ ଏହା ଲୁଚି ଯାଇଥିଲି ସେଥିରୁ ଜଣାଯାଉଛି ଏହା ସେହି ବିପଦ-ଜନକ ଫଟୋ ବୋଲି ।

ସୁଶୀଲ ଫଟୋ ଖୋଲିଲେ । ସେଥିରେ ଦୁଇଟି ନେଗେଟିଭ ଥିଲା । ସୁଶୀଲ କେଦାରନାଥ ଆଡକୁ ନେଗେଟିଭ ପକାଇ ଦେଲେ ।

'ନେଗେଟିଭରୁ ଯଦି କିଛି ନ ଜାଣି ପାରୁଛ ଏ ପ୍ରିଣ୍ଟ କପି ଦେଖ' ସୁଶୀଲ କହିଲେ । ସେ ନିଜ ପକେଟରୁ ଦୁଇଟି ଫଟୋ ବାହାର କଲେ ଏବଂ ସମସ୍ତଙ୍କ ସାମନାରେ ଦେଖାଇଲେ ।

କେଦାରନାଥ କହିଲେ — ଏ ସବୁ ଧୋକା । ହାତ ସଫାଇ କରୁଛ, ହାରାମଜାଦା ମୁଁ ତୁମକୁ ଗୁଳି ମାରିଦେବି ।

ତାପରେ ଅଳ୍ପ ସମୟ ଭିତରେ କେତେକ ଘଟଣା ଘଟିଲା ।

ରୁମରକବାଟ ହଠାତ୍ ଫିଟିଗଲା ଏବଂ ଇନସ୍‌ପେକ୍ଟର ପ୍ରଭୁଦୟାଳ ଓ ଏ. ଏସ୍. ଆଇ ଲୁଥର ଭିତରକୁ ପଶିଲେ । ଦୁହିଁଙ୍କ ହାତରେ ରିଭଲଭର ଥିଲା ।

ସେହି ସମୟରେ ନିମାଣି ଧରିଥିବା ରିଭଲଭର କେଦାରନାଥଙ୍କ ଆଡକୁ ଲକ୍ଷ୍ୟ କରି ଧରିଲେ । କେଦାରନାଥ ନିଜ ରିଭଲଭର ବାହାର କଲେ, ନିମାଣୀ ରିଭଲଭର ସୁଇଚ୍ ଟିପି ଦେଲେ । ସାମାନ୍ୟ ଶବ୍ଦ ହେଲା । ରିଭଲଭରରୁ ଗୁଳି ବାହାରି ନ ଥିଲା । ସେଥିରେ ଗୁଳି ନ ଥିଲା ପ୍ରଭୁଦୟାଳ କେଦାରନାଥ ଆଡକୁ ରିଭଲଭର ଦେଖାଇବାର ସୁଶୀଲ ଦେଖିଲେ ।

ନିମାଣୀ ପୁଣି ସୁଇଚ୍ ଟିପିଲେ । ସାମାନ୍ୟ ଶବ୍ଦ ବ୍ୟତୀତ କିଛି ହେଲା ନାହିଁ ତାଙ୍କର ଚେହେରା ଫିକା ପଡ଼ିଗଲା, ପ୍ରଭୁଦୟାଳ ଗୁଳି ଚଳାଇବାକୁ ଯାଉଥିବା ସମୟରେ ସୁଶୀଲ ପ୍ରଭୁଦୟାଳଙ୍କୁ ଗୋଟିଏ ଧକ୍କା ମାରିଲେ ।

ଏକା ସାଙ୍ଗରେ ଦୁଇଟି ଫାୟାର ହେଲା ।

କେଦାରନାଥଙ୍କ ଶଭଲଭରରୁ ବାହାରିଥିବା ଗୁଳି କିମାଣୀଙ୍କ ଛାତିରେ ବାଜିଲା ଏବଂ ସେ ତଳେ ପଡ଼ିଗଲେ ।

ପ୍ରଦ୍ୟୁମ୍ନଦୟାଳଙ୍କ ଗୁଳି କେଦାରନାଥଙ୍କ କାନ୍ଧରେ ବାଜିଥିଲା, ତା ହାତରୁ ଶଭଲଭର ଛିଟିକି ତଳେ ପଡ଼ିଗଲା ଏବଂ ଅନ୍ୟ ହାତରେ ସେ ନିଜ କାନ୍ଧକୁ ଧରିଥିଲ ।

ପ୍ରଦ୍ୟୁମ୍ନଦୟାଳ ପୁଣି କେଦାରନାଥକୁ ନିଜ ଶଭଲଭର ଲକ୍ଷ୍ୟ କଲେ ।

ସୁଶୀଲ କହିଲେ— ଗୁଳି ମାର ନାହିଁ ।

ପ୍ରଦ୍ୟୁମ୍ନଦୟାଳ ଅଟକି ଗଲେ ।

ଯେଉଁ ସମସ୍ତ ମଧ୍ୟରେ ଜୋଶୀ ମଧ୍ୟ ଶଭଲଭର ବାହାର କରି ସାରିଥିଲା, କିନ୍ତୁ ଲୁଥରା ସତର୍କତା ସହ ତା ହାତରୁ ଶଭଲଭର ଛଡ଼ାଇ ନେଇଥିଲେ ।

ପ୍ରଦ୍ୟୁମ୍ନଦୟାଳ, ସୁଶୀଲକୁ କହିଲେ— ତୁମେ କାହିଁକି ମୋତେ ଧକା ଦେଲ । କିମାଣୀ ଗୁଳିମାଡ଼ ଖାଇଲା । ମୁଁ ଏହି କେଦାରନାଥର କାମ ଆଗେ ବଢ଼ାଇ ଦେଇଥାନ୍ତି ।

ସୁଶୀଳ କହିଲେ – ମୋର ଏଇଥି ପାଇଁ ଭୟ ଥିଲା ।

'ଅର୍ଥ' ?

ଯଦି ତୁମେ କେଦାରନାଥକୁ ମାରି ଦେଇ ଥାଆନ୍ତି, ମୁଁ ତାକୁ ଅପରାଧୀ ବୋଲି ପ୍ରମାଣିତ କରି ପାରି ନ ଥାନ୍ତି ।

ପ୍ରଦ୍ୟୁମ୍ନଦୟାଳ କହିଲେ କାହାକୁ ଅପରାଧୀ ବୋଲି ପ୍ରମାଣ କରି ନଥାନ୍ତ । କେଦାରନାଥ ତ ଅପରାଧୀ । ବର୍ତ୍ତମାନ ତୁମେ ନିଜେ ପ୍ରମାଣିତ କରିଛ । ମୁଁ ବାହାରେ ଠିଆ ହୋଇ ସବୁ ଶୁଣିଛି । ପ୍ରଦ୍ୟୁମ୍ନଦୟାଳ କହିଲେ— ହେ ଭଗବାନ ! ତୁମେ ଦେଖୁନାହିଁ ତ । ତୁମ ବଙ୍ଗଳାରେ ତ୍ୟାଗୀ, ଠାକୁର ଓ ନାରାୟଣ କୁମାରଙ୍କ ହତ୍ୟାକାରୀ ଅନ୍ୟ କେହି ନୁହନ୍ତି ତ ?

ସୁଶୀଳ ହଁ ଭରିଲେ ।

ପ୍ରହ୍ଲାଦସ୍ବାଲ ପଗ୍ଚରଲେ— କଏ ? 'କୋଶୀ ?'

ସୁନୀଲ କହିଲେ— 'ନାଁ।' । 'ନିମାଣୀ' ।

ହେ ଭଗବାନ ! ସୁନୀଲ ତୁମେ ଏ କ'ଣ କହୁଛ ?

ସୁନୀଲ ମୃଦୁକ ହସା ଦେଇ କେଦାରନାଥ ଆଡ଼କୁ ଆକର୍ଷିତ ହୋଇ କହିଲେ— କେଦାରନାଥ, ଯେଉଁ ମିଛ ଜାଲରେ ବର୍ତ୍ତିମାନ ମୁଁ ତୁମକୁ ନକାଇଛି ସେ ତୁମକୁ ଫାଶୀ ଖୁଣ୍ଟ ପର୍ଯ୍ୟନ୍ତ ପହଞ୍ଚାଇ ପାରେ । ଇନସ୍‌ପେକ୍ଟରଙ୍କର ମୋ କଥାରେ ଏତେ ବିଶ୍ବାସ ହୋଇ ଯାଇଥିଲା ଏହାର କାରଣ ଏହିଯେ ସେ ଅପରାଧୀକୁ ରକ୍ଷା କରିବା ପାଇଁ ତୁମକୁ ସୁଟ୍ କରି ଦେବାକୁ ଯାଉଥିଲେ । ମୁଁ ତୁମର ଜୀବନ ରକ୍ଷା କଲି । ମୁଁ ଯଦି ସେହି ସମୟରେ ଇନସ୍‌ପେକ୍ଟରଙ୍କୁ ଧକ୍‌କା ନ ମାରି ଥାଆନ୍ତି ଗୁଳି ତୁମ କାନ୍ଧରେ ବାଜିବା ବ୍ୟତୀତ କୌଣସି ଘାତକ ସ୍ଥାନରେ ବାଜି ଥାଆନ୍ତା । ଏବଂ ତୁମର କାମ ବଢ଼ି ଯାଇଥାଆନ୍ତା । ବର୍ତ୍ତିମାନ ତୁମର ମଙ୍ଗଳ ପାଇଁ ତୁମେ ସତ କଥା କହିଦିଅ । ଓ· କେ ?

କେଦାରନାଥ ସମ୍ମତି ସହ ମୁଣ୍ଡ ହଲାଇଲେ ।

***

ସୁନୀଲ ବ୍ଲାଷ୍ଟ ଅଫିସର ମଲ୍ଲିକ ବାବୁଙ୍କ ପାଖକୁ ଫୋନ କଲେ ।

ସୁନୀଲ କହିଲେ— ଆଜ୍ଞା, ଭାରି ଗଣ୍ଡଗୋଳ ହୋଇଛି । ଆପଣ କେଦାରନାଥଙ୍କ ଫ୍ଲାଟକୁ ଆସନ୍ତୁ ।

ମଲ୍ଲିକ ବାବୁ ସନ୍ଦେହପୂର୍ଣ୍ଣ ସ୍ବରରେ ପଗ୍ଚରିଲେ— କ'ଣ ହୋଇଛି ?

ନିମାଣୀ ଦେହରେ ଗୁଳି ବାଜିଛି । ତାର ବଞ୍ଚିବାର ଆଶା ଦେଖା ଯାଉନାହିଁ ।

'ଓ ମାଇଁ ଗଡ୍ ।'

ସୁଶୀଲ ଉଷିଭର ରଖିଦେଲେ ।

ପ୍ରଭୁଦୟାଲ ଆମ୍ବୁଲେନ୍‌ସକୁ ଫୋନ୍ କରିସାରିଥିଲେ । ସୁଶୀଲଙ୍କ କଥା ଅନୁସାରେ ରୁକ୍ମିଣୀ ଯେ ହତ୍ୟାକାରୀ, ସେକଥା ତାଙ୍କ ମୁଣ୍ଡରେ ଖେଳୁଥିଲା ।

ପ୍ରଭୁଦୟାଲ କହିଲେ— ଏ କି ଗୋଲକ ଧନ୍ଦା । ପ୍ରଥମେ ତୁମେ କେଦାରନାଥ ସହିତ ଏପରି ମଜବୁତ କେଶ୍ ପ୍ରସ୍ତୁତ କଲ ଏବଂ ବର୍ତ୍ତମାନ କହୁଛ ସେ ହତ୍ୟାକାରୀ ନୁହେଁ । ଯଦି ତୁମେ ଜାଣିଥିଲ ଯେ ସେ ହତ୍ୟାକାରୀ ନୁହେଁ କାହିଁକି ତା ପଛରେ ଲାଗିଥିଲ ?

ସୁଶୀଲ କହିଲେ—'ତାର ମୁହଁ ଖୋଲିବା ପାଇଁ ?' କେଦାରନାଥ ପରି ଲୋକର ମୁହଁ ଖୋଲିବାର ଏକମାତ୍ର ଉପାୟ ହେଉଛି ତାକୁ ବିଶ୍ୱାସ ଦିଆଯିବ ଯେ ତାର ଗଳାଫାଶୀ ଖୁଣ୍ଟରେ ଝୁଲିବାକୁ ଯାଉଛି । ପ୍ରମାଣ ତୁମ ସମ୍ମୁଖରେ ଅଛି ।

ତୁମେ ଏଠାକୁ ଆସିବା ପୂର୍ବରୁ କ'ଣ ଜାଣିଥିଲ ଯେ ରୁକ୍ମିଣୀ ହତ୍ୟାକାରୀ ?

'ଅନୁମାନ କରୁଥିଲି ।'

'କିପରି ?'

'ଫଟୋ ଯୋଗୁ ।'

ସୁଶୀଲ ଟେବୁଲ ଉପରେ ରଖିଥିବା ଦୁଇଟି ଫଟୋକୁ ପ୍ରଭୁଦୟାଲ ଉଠାଇ ନେଲେ । କିଛି ସମୟ ତାଜମହଲ ଫଟୋକୁ ଦେଖିଲେ ଏବଂ ଅନ୍ୟ ଫଟୋ ଉପରେ ତାଙ୍କର ଦୃଷ୍ଟି ପଡିଲା, ଯେଉଁଟା କି ଖାଗୀ ଅଫିସର ସୁଶୀଲ ଦ୍ୱାରା ଉଠାଯାଇଥିବା ପ୍ରଥମ ଫଟୋ ଥିଲା ।

ସୁଶୀଲ କହିଲେ— ତାଜମହଲ ଫଟୋ ମତେ ବୋକା କରିଦେଲା । ମୁଁ ଆରମ୍ଭରୁ ହିଁ ଏହାକୁ ଖୁବ୍ ମହତ୍ତ୍ୱ ଦେଉଥିଲି କିନ୍ତୁ ପ୍ରକୃତରେ ଅନ୍ୟଟି ମହତ୍ତ୍ୱପୂର୍ଣ୍ଣ ଫଟୋ' ଅନ୍ୟ ଫଟୋ ମୋ ସମ୍ମୁଖକୁ ଆସିବାରୁ ମୁଁ ତାର

ମହତ୍ତ୍ୱ ଜାଣିଲି କାରଣ ମୁଁ ନିଜେ ଫଟୋ ଉଠାଇ ଥିଲି, ପ୍ରକୃତ କଥା ଫଟୋ ନ ଦେଖି ମଧ୍ୟ ମୋର ଜାଣିବା ଉଚିତ୍ ଥିଲା ।

ପ୍ରକୃତ କଥା କ'ଣ ?

ଯାହାକି ଅନ୍ୟ ଫଟୋଟି ଦେଖି ମୁଁ ଜାଣିଲି । ପ୍ରଭୁ, ଟିକିଏ ନିରୀକ୍ଷଣ କର । ଏହି ୨ୟ ଫଟୋରେ ସେହି ସ୍ଥାନ ପରିଷ୍କାର ଭାବେ ଦେଖା ଯାଉଛି, ଯେଉଁଠାରୁ ତୁମେ ମେକଅପ୍ ବକ୍ସ ପାଇଥିଲ, କିନ୍ତୁ ଫଟୋରେ ତ ମେକଅପ୍ ବକ୍ସ ଦେଖା ଯାଉନାହିଁ ।

ପ୍ରଭୁଦୟାଳ ଫଟୋକୁ ନିରୀକ୍ଷଣ କରି ଦେଖିଲେ ।

ମୁଁ ଯେତେବେଳେ ଘଟଣାସ୍ଥଳରେ ମେକଅପ୍ ବକ୍ସ ପଡ଼ିଥିବାର ଦେଖିଥିଲି ବୁଝି ପାରୁନି ପ୍ରଥମ ଥର କାହିଁକି ମୋତେ ମେକଅପ୍ ବକ୍ସ ଦେଖାଗଲା ନାହିଁ, ବର୍ତ୍ତମାନ ମୁଁ ଜାଣିପାରିଲିଯେ କାହିଁକି ମୋତେ ମେକଅପ୍ ବକ୍ସ ଦେଖାଯାଇ ନ ଥିଲା । ଏହି ଫଟୋରୁ ପ୍ରମାଣ ମିଳୁଛି ଯେ ଯେତେବେଳେ ମେକଅପ୍ ବକ୍ସ ସେଠାରେ ନ ଥିଲା । ଯେଉଁଠାରେ ମେକଅପ୍ ବକ୍ସ ପଡ଼ିଥିଲା, ଯଦି ସେଠାରେ ତାହା ଥାଆନ୍ତା ତାହେଲେ ମୋର ଆଖି ତା ଉପରେ ପଡ଼ି ଥାଆନ୍ତା ଏବଂ ଏହି ଫଟୋରେ ମଧ୍ୟ ନିଶ୍ଚୟ ଉଠି ଥାଆନ୍ତା । କିନ୍ତୁ ମେକଅପ୍ ବକ୍ସ ସେଠାରେ ନଥିଲା । ମୁଁ ଯେତେବେଳେ ସେଠାରୁ ଯାଇଥିଲି ରମାକାନ୍ତର ଜଣେ ଲୋକ ଜୌହରକୁ ଘଟଣାସ୍ଥଳରେ ଦୃଷ୍ଟି ରଖିବାକୁ କହି ଯାଇଥିଲି । ମୁଁ ଓ ନିମାଣୀ ସେଠାକୁ ଫେରିବା ପର୍ଯ୍ୟନ୍ତ ଜୌହର ସେଠାରେ ଦୃଷ୍ଟି ରଖିଥିବ । ସେତେବେଳ ପର୍ଯ୍ୟନ୍ତ ପୋଲିସଙ୍କ ବ୍ୟତୀତ ସେଠାକୁ କେହି ଆସି ନ ଥିଲେ । ମୁଁ ସେଠାରେ ପହଞ୍ଚି ଜୌହରକୁ ସେଠାରୁ ବିଦା କରି ଦେଲି । ଏହା ପରିଷ୍କାର ଜଣା ପଡ଼ୁଛି ଯେ ମେକଅପ୍ ବକ୍ସ ପରେ ଘଟଣାସ୍ଥଳରେ ରଖା ଯାଇଛି । ଏହି କାମ ପୋଲିସ କରି ପାରି ନ ଥାନ୍ତା । ମୁଁ କରି ପାରିନଥାନ୍ତି । କେବଳ ଦୁଇଜ

କରି ପାରିଥାଆନ୍ତେ । କେଦାରନାଥ ଓ ନିର୍ମାଣୀ ମୋତେ ଦେଖିବା ପାଇଁ ସେଠାକୁ ଫେରିଥିଲେ, ସେମାନେ ହୁଏତ ମେକଅପ୍ ବକ୍ସ ତ୍ୟାଗୀ ରୁମରେ ରଖିଥିବେ ଏବଂ ଖାଲି ଅଫିସ ବାଟଦେଇ ନିଜ ଅଫିସରେ ପହଞ୍ଚି କେଉଁଠି ଲୁଚି ଯାଇଥିବେ, ଯଦ୍ୱାରା କି ଜୌହର ତାଙ୍କୁ ଦେଖି ନ ପାରିବ, ସେ ଗଳିବାଟେ ଯାଇଥିଲେ ଜୌହର ନିଶ୍ଚୟ ସେମାନଙ୍କୁ ଦେଖିଥାଆନ୍ତା । କିନ୍ତୁ କେଦାରନାଥ ନିଜ ଅଫିସରେ ଲୁଚିଥିବ ଏକଥା ସମ୍ଭବ ନ ଥିଲା, କାରଣ ତୁମେ ନିଜେ ମୋତେ କହିଥିଲ ଯେ ଦୁଇଟା ପନ୍ଦର ମିନିଟରେ କେଦାରନାଥ ଦମୟନ୍ତୀ କୋଣାର୍କଙ୍କ ଫ୍ଲାଟରେ ଥିଲା । ଏହାର ଅର୍ଥ ସେ ମୋତେ ଦେଖି ଏବଂ ଜୌହର ସେଠାରେ ପହଞ୍ଚିବା ପୂର୍ବରୁ ସେଠାରୁ ଖସି ଯାଇଥିଲା । ବର୍ତ୍ତମାନ ବାକି ରହିଲା ନିର୍ମାଣୀ । ସେ ନିଶ୍ଚୟ ମେକଅପ୍ ବକ୍ସ ସେଠାରେ ରଖିଥିଲା ।

କେତେବେଳେ ?

ଯେତେବେଳେ ସେ ମୋ ସାଙ୍ଗରେ ସେଠାରେ ପହଞ୍ଚି ଥିଲା । ସେତେବେଳେ ମେକଅପ୍ ବକ୍ସ ତା ପକେଟରେ ଥିଲା । ଜୌହର ଯିବା ପରେ ମୁଁ ଗଳି ପାଖରେ ଅଟକି ଗଲି । ନିର୍ମାଣୀ ଲୁଥର ଓ ତୁମ ସହିତ ଭିତରକୁ ଗଲା । ସେ ତୁମ ଉପସ୍ଥିତିରେ ତୁମ ଆଖିରେ ଧୂଳି ଦେଇ ମେକଅପ୍ ବକ୍ସ ସେଠାରେ ରଖିଥିଲା ।

କାହିଁକି ?

ଶୁଣ ! ସେ ପ୍ରଥମ ଥର ତ୍ୟାଗୀ ଅଫିସକୁ ଅଚଳା ଗୁଳି ଚଳାଇ ରିଭଲଭର ପକାଇ ଖସିଯିବା ପରେ ଯାଇଥିଲା । ତ୍ୟାଗୀ ତାଙ୍କୁ କହିଥିଲା ଯେ ସେତିକି ବେଳେ କ'ଣ ହୋଇଥିଲା ଓ ସେ ଝିଅର ବାପାକୁ ଫୋନ କରି ସେଠାକୁ ଡକାଇ ଥିଲେ । ନିର୍ମାଣୀ ତ୍ୟାଗୀ ଠାରୁ ଦୂରେଇ ଯିବାର ଏହି ସୁବର୍ଣ୍ଣ ସୁଯୋଗ ବ୍ୟବହାର କରିଥିଲା । ସେ ରିଭଲଭର ଉଠାଇଲା ଏବଂ ତ୍ୟାଗୀକୁ ମାରି ଦେଲା । ସେ ରିଭଲଭର ସେଠାରେ ପକାଇ ଦେଲା, କିନ୍ତୁ ଅଚଳାର ସେଠାରେ ପଡ଼ିଥିବା ମେକଅପ୍ ବକ୍ସ ସେଠାରେ ରଖି

ନଥିଲି । ମଜୁମଦାର ସେଠାକୁ ଆସିବାର ଥିଲା । ଉଭଲଭର ସଙ୍ଗେ ସଙ୍ଗେ ସେ ମେକଅପ୍ ବକ୍ସକୁ ମଧ୍ୟ ଚହ୍ନି ପାଉ ଥାଆନ୍ତେ ଏବଂ ନିଜ ସ୍ଥିତିର ରକ୍ଷା ପାଇଁ ସେ ଉଭଲଭର ସହ ମେକଅପ୍ ବକ୍ସ ମଧ୍ୟ ସେଠାରୁ ଉଠାଇ ନେଇ ଥାଆନ୍ତେ ।

ଉଭଲଭର କ'ଣ ସେଠାରୁ ମଜୁମଦାର ଉଠାଇଥିଲେ ?

ଯଦି ମଜୁମଦାର ମେକଅପ୍‌ବକ୍ସ ମଧ୍ୟ ନେଇ ଯାଇ-ଥାଆନ୍ତେ, ତେବେ ଅଚଳା ଏଥିରେ ସମ୍ପୃକ୍ତ ବୋଲି ପୋଲିସ କୌଣସି ପ୍ରମାଣ ପାଇ ନ ଥାନ୍ତେ । ନିର୍ମାଣୀ ଚାହୁଁଥିଲି ଯେ ପୋଲିସ ଏପରି କୌଣସି ପ୍ରମାଣ ପାଇବେ ଯାହାକି ଅଚଳାର ସେଠାରେ ଉପସ୍ଥିତି ପ୍ରମାଣିତ ହେବ । ସେଥିପାଇଁ ସେ ତୁମକୁ ଫୋନ କରି କହିଥିଲେ ଯେ ଫୋନ୍ ଦ୍ୱାରା ସେ ଗୋଟିଏ ଖବର ପାଇଛନ୍ତି ଯେ ତ୍ୟାଗୀର ହତ୍ୟା ହୋଇଛି । ଏହି ଫୋନ କରିବାର ଉଦ୍ଦେଶ୍ୟ ଏହା ଥିଲା ଯେ ତାଙ୍କୁ ଯେପରି ପୁନର୍ବାର ସେଠାକୁ ଯିବାର ସୁଯୋଗ ମିଳିବ ଓ ସେ ମେକଅପ୍ ବକ୍ସ ସେଠାରେ ରଖି ଆସିବେ ।

'ତାପରେ ?'

ଯେତେବେଳେ ଠାକୁରର ହତ୍ୟା କରାଗଲା ମୁଁ ଭାବିଥିଲି ଯେ ତାଙ୍କର୍ ଫଟୋ ଯୋଗୁ ହତ୍ୟା କରାଯାଇଥିଲା, କାରଣ ଏହା ସେହି ଫଟୋ ଥିଲା । ଯାହାକୁ କି ହାସଲ କରିବା ପାଇଁ କେତେ ଜଣ ଲୋକ ଉଦ୍‌ବିଗ୍ନ ଥିଲେ । କିନ୍ତୁ ଯେତେବେଳେ ମୁଁ ଅନ୍ୟ ଫଟୋ ଦେଖିଲି ଯେଉଁଥିରେ କି ମେକଅପ୍ ବକ୍ସ ନଥିଲା, ସବୁ କଥା ମୁଁ ଜାଣି ପାରିଲି । କେବଳ ଦୁଇଜଣ ଜାଣିଥିଲେ ଯେ ପ୍ରଥମ ଥର ମୁଁ ତ୍ୟାଗୀର ଅଫିସରେ ଫଟୋ ଉଠାଇଥିଲି, କେଦାରନାଥ ଜାଣିଥିଲା, କାରଣ ସେ ମୋତେ ସେଠାରେ ସେତେବେଳେ ଦେଖିଥିଲା । କାରଣ ଗତ ରାତିରେ ମୁଁ ଯେତେ-ବେଳେ ତୁମକୁ କହିଥିଲି ସେ ମଧ୍ୟ ପୋଲିସ ହେଡ଼କ୍ୱାର୍ଟରରେ ତୁମ ରୁମରେ ଉପସ୍ଥିତ ଥିଲା । ମୁଁ ଏହା ମଧ୍ୟ କହିଥିଲି ଯେ ଫଟୋ ପ୍ରିଣ୍ଟ ଓ ଡେଭଲପ୍ କରିବା ପାଇଁ ମୁଁ ଠାକୁରଙ୍କୁ ଦେଇଛି । ପ୍ରଭୁଦୟାଳ, ତୁମ

ବ୍ୟତୀତ କେବଳ କେଦାରନାଥ ଓ ନିର୍ମାଣୀ ଜାଣିଥିଲେ ଯେ ମୁଁ ପ୍ରଥମ ଥର ତ୍ୟାଗୀ ଅଫିସରୁ ଫଟୋ ଉଠାଇ ଥିଲି । ନିର୍ମାଣୀ ଘଟଣାସ୍ଥଳରେ ପରେ ମେକଅପ୍ ବକ୍ସ ରଖି ଆସିଥିଲା, ସେଥିପାଇଁ ସେ ତାହା ଅନୁଭବ କରୁଥିଲା ଯେ ମେକଅପ୍ ବକ୍ସ ସେଠାରେ ରଖି ଯାଇଥିବା ପୂର୍ବରୁ ଉଠା ଯାଇଥିବା ଫଟୋରେ ତାର ରହସ୍ୟ ଖୋଲିପାରେ । ତେଣୁ ଫଟୋ ହାତକୁ ଆଣିବାକୁ ଚେଷ୍ଟା କରୁଥିଲା । ନିଜ ବିରୁଦ୍ଧରେ ପ୍ରମାଣ ସ୍ୱରୂପ ବ୍ୟବହାର ହେବା ପୂର୍ବରୁ ସେ ତାକୁ ନଷ୍ଟ କରି ପାରିବେ । ତେଣୁ ମଉକା ଦେଖି ସେ ଡାର୍କରୁମକୁ ଯାଇ ସବୁ ଫଟୋ ଓ ପ୍ରିଣ୍ଟ ସେଠାରୁ ନେଇଯାଇ ନେଲା । ସମ୍ଭବତ ସେ ଠାକୁରକୁ ମାରିବାକୁ ଚାହୁଁ ନଥିଲା । କିନ୍ତୁ ଏତେ ଜୋରରେ ପ୍ରହାର ହେଲା ଯେ ସେ ମରିଗଲା । ଦୁର୍ଭାଗ୍ୟବଶତଃ ନାରାୟଣ କୁମାର ଯେ କି ନିଜେ ତାଜମହଲ ଫଟୋ ପାଇଁ ସେଠାରେ ପର୍ଯ୍ୟନ୍ତ ମାରୁଥିଲେ, ହୁଏତ ନିର୍ମାଣୀ ଠାକୁର ମୁଣ୍ଡରେ ପ୍ରହାର କରୁଥିବାର କିମ୍ବା ସେଠାରୁ ଫଟୋ ଓ ପ୍ରିଣ୍ଟ ନେଇଯାଇ ଆଣୁଥିବାର ଦେଖିଥିବ ଏବଂ ହୁଏତ ଏହା ତାର ମୃତ୍ୟୁର କାରଣ ହୋଇଥିବ ।

'ନିର୍ମାଣୀ ଶଭଲଭରର ଗୁଳି ଗୁଳିଲ ନାହିଁ କାହିଁକି ?'

'ସେ ଶଭଲଭର ନିର୍ମାଣୀର ନୁହେଁ ମୋର ।'

ତୁମର ହୋଇଥିବ, କିନ୍ତୁ ଗୁଳି ଗୁଳିଲ ନାହିଁ କାହିଁକି ?

କାରଣ ସେଥିରେ ଗୁଳି ନ ଥିଲା । ତାହା ଗୋଟିଏ ଖାଲି ଶଭଲଭର ଥିଲା, ମୁଁ ଜାଣି ଶୁଣି ଖାଲି ରଖିଥିଲି ।

କାହିଁକି ?

କାରଣ ମୋର ଭୟ ଥିଲା ଯେ କେଦାରନାଥକୁ ନିଜ ମୁହଁ ଖୋଲିବାକୁ କହି କାଲେ ତାର ମୁହଁ ବନ୍ଦ କରିଦେବ । ମୁଁ ଚାହୁଁ ନଥିଲି ଯେ କେଦାରନାଥର ଜୀବନ ତା ହାତରେ ଚାଲିଯାଉ । ନିର୍ମାଣୀର ପ୍ରକୃତ ପ୍ରମାଣ ତ ଏହା ।

ଶଭଲଭରଟି ଖାଲି ଥାଉ ପଛେ ତା ହାତକୁ ତୁମେ କାହିଁକି ଦେଲ ?

ତା ପାଖରେ କାଲେ ତା ନିଜର ରିଭଲଭର ଥିବ ସେଥିପାଇଁ ମୋର ଭୟ ଥିଲା । ସେଥିପାଇଁ ମୋ ରିଭଲଭର ତାଙ୍କୁ ଧରାଇ ଦେଲି । ତେଣୁ ସେ ନିଜ ରିଭଲଭର ବାହାର କରିବା ଦରକାର ପଡ଼ିଲା ନାହିଁ ଏବଂ ସେ ଜାଣି ପାରିଲେ ନାହିଁ ଯେ ମୋ ରିଭଲଭର ଖାଲି ଅଛି ବୋଲି । ତାଙ୍କ ଦୃଷ୍ଟିରେ ଏପରି ବିପଦଜନକ ସ୍ଥାନକୁ ମୁଁ ଖାଲି ରିଭଲଭର ନେଇ ଆସି ନ ଥିବି ବୋଲି ସେ ଭାବିଲେ । ମୁଁ ଯଦି ତାଙ୍କୁ ଖାଲି ରିଭଲଭର ଦେଇ ନ ଥାନ୍ତି ସେ ନିଜର ଗୁଳି ଭରା ରିଭଲଭର ବାହାର କରି ଥାଆନ୍ତା ଓ କଥାଟା ଅନ୍ୟ ପ୍ରକାର ହୋଇ ଥାଆନ୍ତା ।

ଏହି ସମୟରେ ଲୁଥରା ନିର୍ମାଣୀର ପକେଟ ଅଣ୍ଡାଳିଲେ ।

ସେ କହିଲେ—'ଏହା ପାଖରେ ରିଭଲଭର ଅଛି ।'

ସେତେବେଳକୁ ମଲ୍ଲିକବାବୁ ମଧ୍ୟ ସେଠାରେ ପହଞ୍ଚିଥିଲେ ।

ତାପରେ ଆମ୍ବୁଲାନ୍‌ସ ।

କିନ୍ତୁ ଆମ୍ବୁଲାନ୍‌ସ କେଦାରନାଥଙ୍କ କାମରେ ଆସିଲା ।

ନିର୍ମାଣୀ ଆଗରୁ ମରି ସାରିଥିଲା ।

***

ଏ. କେ ମଜୁମଦାର, ଅଚଳା, ପ୍ରକାଶ ଓ ସୁଶୀଲ 'ବ୍ଲାଷ୍ଟ' କୋଠାରେ ମଲ୍ଲିକ ବାବୁଙ୍କ ଅଫିସରେ ବସିଥିଲେ ।

ମଜୁମଦାରଙ୍କ ଚେହେରା ଲଜ୍ୟାଶୀଳ ଥିଲା, ସେ କେତେ ଥର ସୁଶୀଲକୁ କ୍ଷମା ମାଗି ମଧ୍ୟ ସାଇ ନ ଥିଲେ ।

ମଜୁମଦାର କହିଲେ— ସୁଶୀଲ ଜୋଶୀ କହୁଛି ଯଦି ତୁମେ ତାର ଗୋଟିଏ ଉପକାର କରିବ ତେବେ ସେ ତୁମକୁ କଲ୍ୟାଣ କରିବ ଏବଂ ମୁଁ ମଧ୍ୟ ।

କ'ଣ ?

ମୁରାରି ଓ କାଲୁ ତୁମ ରିପୋର୍ଟ ଅନୁସାରେ ଗିରଫ ହୋଇଛନ୍ତି । ଯଦି ତୁମେ ତୁମର ଚାର୍ଜ ଫେରାଇ ନେବ ତେବେ ସେମାନେ ମୁକ୍ତ ହୋଇ ଯିବେ ।

ସେ ସେଇ ବଦମାସମାନଙ୍କ ମୁକ୍ତି ଚାହୁଁଛ କାହିଁକି ?

ମୁଁ ସେପରି କରିବାକୁ ଚାହେଁ ନାହିଁ । ଗତ ୨୪ ଘଣ୍ଟା ମଧ୍ୟରେ ଯାହାସବୁ କାର୍ଯ୍ୟ ମୁଁ କରିଛି ସେଥି ମଧ୍ୟରୁ ଏହା ମଧ୍ୟ ଗୋଟିଏ ଯେ ଜୋଶୀ ମାଧ୍ୟମରେ ତୁମ ପଛରେ ମୁଁ ଗୁଣ୍ଡା ଲଗାଇଥିଲି । ତାଙ୍କର ତୁମ ସହ କୌଣସି ଶତ୍ରୁତା ନାହିଁ । ସେ ଯାହା କଲେ ଜୋଶୀ ମାଧ୍ୟମରେ କରିଛନ୍ତି କେବଳ ମୋର ପାଇଁ ।

ଠିକ୍ ଅଛି । ମୁଁ ଚାର୍ଜ ଫେରାଇ ନେବି ।

ଧନ୍ୟବାଦ ।

'କିଛି ମନେ କରନ୍ତୁ ନାହିଁ ।'

ଆଉ ଅଚଳା ପାଇଁ ମଧ୍ୟ ତୁମେ କିଛି କରିଛ, ସେ·········

ଶୁଣନ୍ତୁ । ଗୋଟିଏ କଥା ମୋତେ ବାରମ୍ବାର କହି ଲଜ୍ୟା ଦିଅନ୍ତୁ ନାହିଁ ।

ମୁଁ ପୋଲିସ କମିଶନରଙ୍କୁ ସାକ୍ଷାତ କରିଥିଲି । ସେ କଥା ଦେଇଛନ୍ତି ଯେ ଖାଗୀ ଅଫିସରୁ ମିଳିଥିବା ଅଚଳାର ଚିଠି ଓ ଫଟୋ କୌଣସି ପବ୍ଲିସିଟି ପାଇଁ ଦିଆଯିବ ନାହିଁ ଓ କାଲି ସକାଳେ ବୁଲିଯାଇ ନିଜର ଅଚଳାକୁ ଫେରାଇ ଦିଆଯିବ ।

'ଖୁବ୍ ଭଲ ।'

ମୁଁ ଆସନ୍ତା ରବିବାର ଦିନ ପ୍ରକାଶ ଓ ଅଚଳାର ବିବାହ କରୁଛି । ତୁମେ ଆସିବାକୁ ଭୁଲିବ ନାହିଁ । ନିଶ୍ଚୟ ଆସିବ ।

ନିଶ୍ଚୟ ଆସିବ ।

ମଲ୍ଲିକ ବାବୁ ଆପଣ ମଧ୍ୟ ଆସିବେ ।

ମଲ୍ଲିକ ବାବୁ କହିଲେ— ଯିବି ।

ତାପରେ ପିତା, ପୁତ୍ରୀ ଓ ଭାବି ଜ୍ୱାଇଁ ସେଠାରୁ ବିଦାୟ ନେଲେ ।

ମଲ୍ଲିକବାବୁ ଦୀର୍ଘ ନିଶ୍ୱାସ ନେଲେ । ସେ ନିଜ ତ୍ରୁରୁ 'ଶିବାଜୀ ଶଗାଲ'ର ଗୋଟିଏ ନୂଆ ବୋତଲ ବାହାର କରି ଦୁଇଟି ଗ୍ଲାସ ବାହାର କଲେ । ସେ ବୋତଲ ଖୋଲିଲେ, ଦୁଇଟି ଗ୍ଲାସରେ ହୁଇସ୍କି ଢାଳିଲେ ଓ ଗୋଟିଏ ସୁନୀଲ ଆଡ଼କୁ ବଢ଼ାଇଲେ ।

ସେ କହିଲେ—'ମୁଁ ଅବଶୋଷ କରୁଛି ଯେ କମାଣ୍ଡୀ ଭଳି ଲୋକ ମୋ ପାଖରେ କାମ କରୁଥିଲା ।"

ସୁନୀଲ ଚୁପ ରହିଲେ । ସେ ହୁଇସ୍କି ଟିକିଏ ପିଇଲେ ।

ମଲ୍ଲିକବାବୁ କହିଲେ—ମୁଁ ତାକୁ ବାହାର କରି ଦେଇଥିଲି, ତୁମେ ତା ପାଇଁ ଯଦି ସୁପାରିଶ୍ ନ କରି ଥାଆନ୍ତ 'ବ୍ଲାଷ୍ଟ'ର ଆଜି ଏପରି ପରିସ୍ଥିତି ସୃଷ୍ଟି ହୋଇ ନ ଥାନ୍ତା ।

ସୁନୀଲ କହିଲେ— ତଥାପି ମଧ୍ୟ ସେ ବ୍ଲାକମେଲରର ସହଯୋଗୀ ରହିଥାଆନ୍ତା । ସେ ତ ଅନେକ ପୁରୁଣା କଥା । ଠାକୁରଙ୍କୁ ହତ୍ୟା କରି ମଧ୍ୟ ଧରା ହୋଇ ନ ଥାନ୍ତା । ଏହା ତାର ଦୁର୍ଭାଗ୍ୟ ଯେ ଠାକୁର ଦୁଇଟି ଫଟୋ ପ୍ରିଣ୍ଟ କରି ମୋ କ୍ୟାବିନରେ ରଖି ଯାଇଥିଲା, କମାଣ୍ଡୀ ସେ କଥା ଜାଣି ନ ଥିଲା ।

ହଁ । ଏଇ କମାଣ୍ଡୀ ପାଇଁ 'ବ୍ଲାଷ୍ଟ'ର କେତେ ବଦନାମ ହେଲା । ଯଦି ଆମ କର୍ମଚାରୀ ସମ୍ପୃକ୍ତ ନ ଥାନ୍ତା, ଏପରି କାହାଣୀପାଇଁ ଆମେ କେତେ ଖୁସି ହୋଇ ଥାଆନ୍ତୁ, କିନ୍ତୁ ବର୍ତ୍ତମାନ·········

ସୁନୀଲ ନିଜ ଗ୍ଲାସ ଖାଲି କରି ଉଠି ଠିଆ ହେଲେ । ଆଜ୍ଞା, ମୋତେ ଅନୁମତି ଦିଅନ୍ତୁ ।

ମଲ୍ଲିକ ବାବୁ କହିଲେ—ନାଁ ।

ସୁନୀଲ ଆଶ୍ଚର୍ଯ୍ୟ ହୋଇ ତାଙ୍କ ମୁହଁକୁ ଅନାଇ ରହିଲା ।

'ବସ ।'

'ସୁନୀଲ ବସିଲେ ।'

'ମୋତେ ପୂର୍ବ ଘଟଣା ଶୁଣାଅ ।'

ଆପଣ, ତ ଶୁଣି ସାରିଛନ୍ତି ।'

ପୂର୍ବ ଶୁଣି ନାହିଁ । ଅଳ୍ପ କିଛି । ତୁମେ କିପରି ସବୁ କଥା ଜାଣି ପାରିଲ ଆରମ୍ଭରୁ ଶୁଣାଅ ।

ମୁଁ ଖଣ୍ଡେ ସିଗାରେଟ ଲଗାଇ ପାରେ କି ?

'ନିଶ୍ଚୟ । '

ସୁନୀଲ ଲକଷ୍ଟ୍ରାଇକ୍ ପ୍ୟାକେଟ ଖୋଲିଲେ ଏବଂ ଖଣ୍ଡେ ସିଗାରେଟ ଲଗାଇଲେ । ମଲିକ ବାବୁ ଧୂମ୍ରପାନ କରନ୍ତି ନାହିଁ । ସୁନୀଲ ସିଗାରେଟ ଟାଣୁ ଟାଣୁ ହିଁବାଙ୍କା ଗିଗାଲ ବୋତଲଟିକୁ ଆଣିଲେ । ସେ ନିଜ ଗ୍ଲାସରେ ହୁଇସ୍କି ଢ଼ାଳିଲେ ଓ କହିଲେ – ଏହି କେଶର କେତେକ ତଥ୍ୟ କେଦାର-ନାଥ କଥାରୁ ଜଣା ପଡ଼ିଛି, କେତେକ ମୁଁ ଜାଣିଥିଲି, ବାକି ତଥ୍ୟ ଗୁଡ଼ିକ ମୁଁ ସ୍ବନିକ ଖାତ ଜାଣିଲି । ତ୍ୟାଗୀ, କେଦାରନାଥ ଓ ନିମାଣୀ ତିନିଜଣ ଯାକ ବ୍ଲାକମେଲିଂର ପାର୍ଟନର ଥିଲେ । ତ୍ୟାଗୀର ନିମାଣୀ ଉପରେ 'କ୍ଲାଷ୍ଟ'ରେ ସୃନିଶ୍ଚ କଲି ବେଲଠାରୁ କୌଣସି କାରଣରୁ ରାଗ ଥିଲା । ନିମାଣୀକୁ ତ୍ୟାଗୀ ଏକ ପ୍ରକାର ଜବରଦସ୍ତ ଫସେଇ ଥିଲା । ତ୍ୟାଗୀ ଓ ନିମାଣୀ ଦୁହେଁ ସାମ୍ବାଦିକ ଥିଲେ । ତାଙ୍କର ଏହି ପେଶା ଯୋଗୁ ଲୋକ ମାନଙ୍କ ଜୀବନର ଅନ୍ଧକାର କାରଣ ସବୁ ଜଣାଥିଲା । କେଦାରନାଥ ପ୍ରାଇଭେଟ ଡ଼ିଟେକ୍ଟିଭ ଥିଲା ଏବଂ ସେ ସେହି ଅନ୍ଧକାର କାରଣରୁ ଏପରି ତଥ୍ୟ ସଂଗ୍ରହ କରୁଥିଲା । ଯାହାକି ବ୍ଲାକମେଲିଂର ଆଧାର ଥିଲା । ଏହି ତିନି ଜଣଙ୍କ ମଧ୍ୟରୁ ତ୍ୟାଗୀ ହାରାମି ଥିଲା । କାରଣ ସେ ନିମାଣୀକୁ ମଧ୍ୟ ନିଜ ଜାଲରେ ଏପରି ଫସେଇ ଥିଲା ଏବଂ ପାଉଥିବା ଅର୍ଥର ଅଧା ଭାଗ ମଧ୍ୟ ତାକୁ ଦେଉ ନ ଥିଲା । ନିମାଣୀ ଏଥିପାଇଁ ଖୁବ୍ ରାଗି ଥିଲା । ତେଣୁ ତ୍ୟାଗୀକୁ ତା ରାସ୍ତାରୁ ହଟାଇବାକୁ ସେ ଭାବିଲା । ଧୀରେ ଧୀରେ ତା ମନରେ ଏଇ କଥା ବଢ଼ିବାରେ ଲାଗିଲା । ସେ ଆରମ୍ଭରୁ ସୁଯୋଗ ଖୋଜୁଥିଲା ଯେ ସେ ତ୍ୟାଗୀକୁ ହତ୍ୟା କରିବ ଏବଂ ଯେମିତି ଧରା ନ ପଡ଼ିବ,

କାଲି ତାକୁ ଏପରି ସୁଯୋଗ ମିଳିଲା ଯେ ଯାହାକି କଳ୍ପନା କରି ନ ଥିଲା ।

ଅଚଳା ତ୍ୟାଗୀ ଅଫିସକୁ ଯାଇ ତା ଉପରକୁ ଗୁଳି ଚଳାଇ ଆସିଲା ?

ସୁନୀଲ କହିଲେ—ଆଜ୍ଞା, ହଁ । ଆପଣ ତ ଏକଥା ଜାଣି ସାରିଛନ୍ତି । କାଲି ଯେତେବେଳେ ନିର୍ମାଣୀ ତ୍ୟାଗୀ ଅଫିସରୁ ବାହାରିଥିଲା ସେ ଅଚଳାକୁ ତ୍ୟାଗୀ ଅଫିସକୁ ଯିବାର ଦେଖିଥିଲା ଏବଂ ସେଠାରୁ ଫେରି ନ ଆସି ବାହାରେ ଠିଆ ହୋଇଥିଲା । ସେ ଦୁଇଟି ଗୁଳି ଫୁଟିବାର ଶବ୍ଦ ଶୁଣିଲା । ସେ ଯାଇ ସିଡ଼ି ପାଖରେ ଲୁଚିଗଲା । ଅଚଳା ତ୍ୟାଗୀ ଅଫିସରୁ ବାହାରିଲା ଏବଂ ପ୍ରତୀକ୍ଷାରତ ଟ୍ୟାକ୍ସି ସାହାଯ୍ୟରେ ସେଠାରୁ ପଳାଇ ଆସିଲା । ନିର୍ମାଣୀ ତ୍ୟାଗୀ ଅଫିସକୁ ଫେରିବାରୁ ଜାଣିଲା ଯେ ଅଚଳାର ଲକ୍ଷ୍ୟଭ୍ରଷ୍ଟ ହୋଇ ସାରିଥିଲା ଏବଂ ତ୍ୟାଗୀ ଠିକ୍ ଥିଲା । ତ୍ୟାଗୀ ନିର୍ମାଣୀ ସାମନାରେ ମଜୁମଦାରଙ୍କୁ ଫୋନ୍ କରି ସେଠାକୁ ଡକାଇଲା, କିନ୍ତୁ ଟେଲିଫୋନରେ କ'ଣ ହୋଇଛି ସେ ମଜୁମଦାରଙ୍କୁ କହି ନଥିଲା । ନିର୍ମାଣୀ ସବୁ କଥା ବୁଝିଗଲା, ତଳେ ପଡ଼ିଥିବା ରିଭଲଭର ଓ ମେକଅପ୍‌ବକ୍ସ୍‌କୁ ଦେଖିନେଲା ଏବଂ ସେ ମନେ ମନେ ଠିକ୍ କଲା ଯେ ତ୍ୟାଗୀକୁ ହତ୍ୟା କରିବାର ଏପରି ସୁବର୍ଣ୍ଣ ସୁଯୋଗ ଆଉ ଆସିବ ନାହିଁ । ସେ ରିଭଲଭର ଉଠାଇ ତ୍ୟାଗୀକୁ ମାରିଦେଲା । ସେହି ସମୟରେ କେଦାରନାଥ ଓ ଦମୟନ୍ତୀ ଜୋଶୀ କେଦାରନାଥଙ୍କ ଅଫିସରେ ଥିଲେ । କେଦାରନାଥ ମଝିରେ ଥିବା ଖାଲି ଅଫିସର କବାଟ ଖୋଲି ନିର୍ମାଣୀକୁ ସେଠାରେ ଦେଖିଲେ ।

ସେ ନିର୍ମାଣୀ ବିଷୟରେ ପୋଲିସକୁ କାହିଁକି ଜଣାଇଲେ ନାହିଁ ?

ସେ କାହିଁକି କହିଥାନ୍ତେ ? ତ୍ୟାଗୀର ମୃତ୍ୟୁରେ ତାଙ୍କର ଲାଭଥିଲା । ପ୍ରଥମେ ବ୍ଲାକମେଲିଂ ଧନ୍ଦାରୁ ତାଙ୍କୁ ଏକ ତୃତୀୟାଂଶ ଭାଗ ମିଳୁଥିଲା, ବର୍ତ୍ତମାନ ଅଧା ପାଇଥାନ୍ତେ । ସେ ନିର୍ମାଣୀର ଉଦ୍ଦେଶ୍ୟ ଜାଣି

ଯାଇଥିଲେ । ଏହା ଜାଣିବା ଦ୍ୱାରା ଭବିଷ୍ୟତରେ ସେ ବେଶୀ ଲାଭ ପାଇଁ ଉପାୟ ନିର୍ମାଣୀ ବିରୁଦ୍ଧରେ କରିପାରି ଥାଆନ୍ତେ । ତେଣୁ ସେହି ସମୟରେ ସେ ଚୁପ୍ ରହିବାକୁ ଉଚିତ୍ ମନେକଲେ । ସେଥିପାଇଁ ଚୁପ୍‌ଚାପ୍ ନିଜ ଅଫିସକୁ ଫେରି ଆସିଲେ । କିନ୍ତୁ ଗୁଳି ଶବ୍ଦ ଦମୟନ୍ତୀ ଜୋଶୀ ମଧ୍ୟ ଶୁଣିଥିଲେ । କେଦାରନାଥ ପଚାରିବାରୁ ସେ କହିଲେ ତ୍ୟାଗୀର ହତ୍ୟା ହେଲା । କିନ୍ତୁ ହତ୍ୟାକାରୀକୁ ସେ ଦେଖି ପାରିଲେ ନାହିଁ ।

"ହୁଁ ।"

ତାପରେ ସେ ଅଫିସ ଛାଡ଼ିବା ପୂର୍ବରୁ ପ୍ରକାଶ ସେଠାରେ ପହଞ୍ଚିଥିଲା । କେଦାରନାଥ ଖୋଲି ଅଫିସ ଥିବା କବାଟ ଖୋଲି ତ୍ୟାଗୀ ଅଫିସକୁ ଦେଖିଲେ ଯେ ପ୍ରକାଶ ସେଠାରେ କ'ଣ କରୁଛି । ପ୍ରକାଶ ତ୍ୟାଗୀର ଶବ ସେଠାରେ ପଡ଼ିଥିବା ଦେଖି ଫେରି ଆସିଲା । କିଛି ସମୟ ପରେ ମଜୁମଦାର ସେଠାରେ ପହଞ୍ଚିଲେ । ସେଠାରେ ତାଙ୍କର ରିଭଲଭର ପଡ଼ିଥିବାର ସେ ଦେଖିଲେ । ସେ ସେଠାରୁ ରିଭଲଭର ନେଇ ଚାଲିଆସିଲେ । ତାପରେ କେଦାରନାଥ ମଧ୍ୟ ଦମୟନ୍ତୀ ଯୋଶୀ ସହ ସେଠାରୁ ବାହାରକୁ ଆସିଲେ । ସେହି ସମୟରେ ତାଙ୍କସ୍ୱାଜୁଲ୍ଲୁସ ସହିତ ଦମୟନ୍ତୀ ଜୋଶୀଙ୍କର ଫଟୋ ଉଠା ଯାଇଥିଲା । ମୁଁ ସେ କୋଠାରେ ପହଞ୍ଚିବାର ସେମାନେ ଦେଖିଲେ ଏବଂ ସେମାନେ ମଧ୍ୟ ଫେରି ଆସି ମୋତେ ଲକ୍ଷ୍ୟକଲେ ଯେ ତ୍ୟାଗୀର ଶବ ଦେଖି ମୋର କି ପ୍ରତିକ୍ରିୟା ହେଉଛି ।

'ତୁମେ ଓ ପ୍ରକାଶର ଘଟଣା ସ୍ଥଳରେ ଉପସ୍ଥିତି ବିଷୟ ପୋଲିସକୁ ସେ ଖବର ଦେଇଥିଲେ ?'

ସେଠାରେ ମୋର ଉପସ୍ଥିତି ଖବର କେଦାରନାଥ ଦ୍ୱାରା ପୋଲିସକୁ ମିଳିଥିଲା, କିନ୍ତୁ ପ୍ରକାଶ ବିଷୟରେ ଗୁପ୍ତ ଖବର ପୋଲିସ

ନକଟରେ ପହଞ୍ଚିଥିଲା, ସେ ଖବର ନିର୍ମାଣୀ ଦେଇଥିଲା । କେଦାରନାଥ ନିର୍ମାଣୀ ପାଖରେ ପହଞ୍ଚିଥିଲା ଓ ସେ କ'ଣ ଜାଣେ କହିଥିଲା । ସେ ନିର୍ମାଣୀକୁ କହିଲା ବ୍ଲାକମେଲିଂ ଧନ୍ଦା ତା ସହ ସେ ଏକାଠି କରୁ ନଚେତ୍ ତ୍ୟାଗୀକୁ ନିର୍ମାଣୀ ହତ୍ୟାକରିଛି ବୋଲି ପୋଲିସକୁ କହି ଦେବ । ନିର୍ମାଣୀ ହୁଁ ଭରିଲା । ତାପରେ ସେ ଜାଣି ପାରିଲା ଯେ ଅଚଳା ହତ୍ୟା କରିଥିବା ସନ୍ଦେହରେ ପୋଲିସ ଦ୍ୱାରା ମୁକ୍ତ ହୋଇ ସାରିଥିଲା । ପୋଲିସ ଆଗରେ ଦ୍ୱିତୀୟ ବଳି ପ୍ରସ୍ତୁତ କରିବା ପାଇଁ ସେ ପୋଲିସକୁ ଖବର ଦେଲା ଯେ ହତ୍ୟା ସମୟରେ ପ୍ରକାଶ ଘଟଣାସ୍ଥଳରେ ଉପସ୍ଥିତ ଥିଲା ।

'ଆଇ ସି ।'

ତ୍ୟାଗୀ ହତ୍ୟା ପରେ ନିର୍ମାଣୀ ଏଠାକୁ ଫେରି ଆସିଥିଲା । ଏଠାରେ ସେ ବାହାନା କରି କହିଲା ଯେ ତ୍ୟାଗ ହତ୍ୟାର ଖବର ସେ ପାଇଲା । ସେ ପୋଲିସକୁ ଫୋନ କରି କହିଲା ଯେ କାହାଠାରୁ ସେ ହତ୍ୟା ଖବର ପାଇଥିଲା । ଏହି ବାହାନାରେ ସେ ପୁଣି ଘଟଣା ସ୍ଥଳକୁ ଯାଇ ମେକଅପ୍ ବକ୍ସ ଉଠି ଆସିଥିଲା । ଏଥିସହ ସମ୍ବନ୍ଧିତ କଥା ଗୁଡ଼ିକ ଆପଣ ଜାଣିଛନ୍ତି । ମେକଅପ୍ ବକ୍ସ ଯୋଗୁ ଅଚଳାକୁ ସନ୍ଦେହ କରାଗଲା, ତଥାପି ସେ ମୁକ୍ତ କରି ଦିଆଗଲା । ମୁଁ ଫଟୋ ଉଠାଇଥିବା କଥା ନିର୍ମାଣୀ ମୋ ଠାରୁ ଜାଣି ପାରିଲା ଏବଂ ତାହା ପାଇଁ ଚିନ୍ତାର ବିଷୟ ହୋଇ ପଡିଲା । ମୁଁ ଉଠାଇ ଥିବା ତାଜସ୍ତା ଫଟୋ ପାଇଁ କେତେକଙ୍କର ଉଦ୍‌ବେଗ ଥିଲା, କାରଣ ତ୍ୟାଗୀ ହତ୍ୟା ସମୟରେ ସେମାନେ ଆଖ ପାଖରେ ଉପସ୍ଥିତ ଥିବା ଫଟୋରୁ ଜଣା ଯାଉଥିଲା । ଅଚଳା, ତାର ବାପା, ଫ୍ୟାରେଲାଲ, ନାରାୟଣ କୁମାର, ଜୀବନ ମାଲହୋତ୍ରା, କେଦାରନାଥ ସମସ୍ତଙ୍କ ପାଇଁ ଏହି ଫଟୋ ଏକ ଚିନ୍ତାର ବିଷୟ ଥିଲା । ସେହି ଫଟୋ ସହ ନିର୍ମାଣୀର କିଛି ସମ୍ବନ୍ଧ ନ ଥିଲା, କିନ୍ତୁ ଅନ୍ୟ ଫଟୋ ପାଇଁ କେବଳ ଜଣେ ଲୋକ ବ୍ୟସ୍ତ ଥିଲା ସେ ହେଉଛି ନିର୍ମାଣୀ । ଅନ୍ୟ ଫଟୋଟିରୁ ନିଃସନ୍ଦେହରେ ପ୍ରମାଣ ହେଉଥିଲା ଯେ ମେକଅପ୍ ବକ୍ସ ପରେ ରଖା

ଯାଇଛୁ ଏବଂ ଏହି କାମ କେବଳ ନିର୍ମାଣୀ କରିଛି । ସେ ଯେତେବେଳେ ମେକଅପ୍ ବକ୍ସ ସେଠାରେ ରଖିଲା ଜାଣି ପାରିଲା ନାହିଁ ଯେ ମୁଁ ତା ପୂର୍ବରୁ ସେଠାକୁ ଯାଇ ବୁଲି ଆସିଥିଲି ଏବଂ ସେଠିଭାର ଫଟୋ ଉଠାଇ ଆଣିଥିଲି । ସେ ଜାଣି ନଥିଲା ଯେ ତାଜମ୍ମା ଫଟୋ ଉଠାଇବା ପାଇଁ ମୁଁ କମର୍ସିଆଲଷ୍ଟୁଡିଓକୁ କାହିଁକି ଠିକ୍ କରିଥିଲି । ସେହି ସୁଯୋଗରେ ସେଠାରେ ଅଚଳା ସହ ଦେଖାହେଲା ଏବଂ ସେ ମୋତେ ସବୁ କିଛି କହି ଦେଇଥିଲା । ଅନ୍ୟ ଫଟୋ ସହ ସମ୍ବନ୍ଧ କେତେକ ତଥ୍ୟ ଅନୁସନ୍ଧାନ ପାଇଁ ନିର୍ମାଣୀ ପୋଲିସ ହେଡକ୍ୱାଟରକୁ ଫୋନ୍ କରି ଏଠାକୁ ଫେରିଲା । ଗୋଟିଏ ସୁଯୋଗ ଦେଖି ସେ ଠାକୁର ଉପରେ ଆକ୍ରମଣ କଲା ଓ ସବୁ ଫଟୋ ଓ ନେଗେଟିଭ ନେଇଗଲା । ଏହା ନିର୍ମାଣୀ ଓ ନାରାୟଣ କୁମାର ଦୁହିଁଙ୍କର ଦୁର୍ଭାଗ୍ୟ ଥିଲା । ଏଇ ସମୟରେ ନାରାୟଣ କୁମାର ସେଠାରେ ପହଞ୍ଚିଲେ ଓ ସେ ନିର୍ମାଣୀକୁ ଦେଖି ନେଲେ । ଯେତେବେଳେ ନିର୍ମାଣୀ ଜାଣି ନ ଥିଲା ଯେ ସେ ଲୋକ କିଏ ? ଯଦି ଜାଣି ଥାଆନ୍ତା ଯେ ସେ ନାରାୟଣକୁମାର ତେବେ ସେ ଭୟ କରିନଥାନ୍ତା, କାରଣ ନାରାୟଣକୁମାର ନିଜେ ଜଣେ ପଳାତକ ଅପରାଧୀ ଥିଲେ । ସେ ନିର୍ମାଣୀର କାର୍ଯ୍ୟକଳାପ କହିବାକୁ ପୋଲିସ ସାମନାକୁ ଯାଇପାରି ନଥାନ୍ତା । ବୋଧହୁଏ ନାରାୟଣ କୁମାର ନିର୍ମାଣୀକୁ ତାଜମ୍ମା ଫଟୋ ଓ ନେଗେଟିଭ ମାଗିଥିଲା । ନିର୍ମାଣୀ ତାଙ୍କୁ ବୁଝାଇଥିଲେ ଯେ ଏତେ ଫଟୋ ଓ ନେଗେଟିଭ ଭିତରୁ ତାଙ୍କର ଦରକାର ଜିନିଷ ଶୀଘ୍ର ଖୋଜିବାକୁ ଅସୁବିଧା ହେବ, ତେଣୁ ସେ ଫଟୋ ଓ ନେଗେଟିଭ ପଛରେ ବାଛି ତାଙ୍କ ପାଖରେ ପହଞ୍ଚାଇ ଦେବ ବୋଲି କହିଲା ଓ ତାଙ୍କ ଠିକଣା ମାଗିଲେ । ନାରାୟଣକୁମାର ଠିକଣା କହି ଦେଲେ । ନିର୍ମାଣୀ ବୋଧହୁଏ ତାଙ୍କର ପିସ୍ତଲ ଧରି ତାଙ୍କ ଫ୍ଲାଟରେ ପହଞ୍ଚିଥିବ । ନିର୍ମାଣୀ ନାରାୟଣ-କୁମାରଙ୍କର ମୃତ୍ୟୁ ପରୱାନା ନେଇ ଯାଇଥିବ ।

'ତା' ହେଲେ ୨ୟ ଫଟୋରେ ଏଇ ଗୋଟିଏ ଜିନିଷ ଥିଲା ଯାହାକ

ତୁମର ଦୃଷ୍ଟି ନିର୍ମାଣୀ ଆଡ଼କୁ ଆକର୍ଷିତ କରିଥିଲା ?'

ଅଜ୍ଞା ହଁ । କିନ୍ତୁ ପରେ ମୋର ଆଉ ଗୋଟିଏ କଥା ମନେପଡ଼ିଲା, ଯାହାକି ହଠାତ୍ ନିର୍ମାଣୀ ମୁହଁରୁ ବାହାରି ପଡ଼ିଥିଲା ।

କି କଥା ?

ଆଜି ସକାଳେ ଯେତେବେଳେ ମୁଁ ଓ ନିର୍ମାଣୀ ଆପଣଙ୍କ ଅଫିସରୁ ବାହାରିଥିଲୁ କଥା କଥାରେ ସେ କହିଥିଲା – ପ୍ରଥମେ ବିଚରା ତ୍ୟାଗୀର ଶବ ଡାହାଣପଟ ମାଡ଼ି ପଡ଼ିଥିବାର ଦେଖାଗଲା ଓ ବିଚରା ଠାକୁରର ଶବ ଟେବୁଲ ଉପରେ ଅଣ୍ଡାରୁଆରେ ଦେଖାଗଲା । ନିର୍ମାଣୀର ଏ କଥା ପ୍ରଥମେ ମୁଁ ବୁଝି ପାରିଲିନାହିଁ । ନଚେତ୍ ମୁଁ ଦ୍ୱିତୀୟ ଫଟୋ ଦେଖିବା ପୂର୍ବରୁ ସବୁ କଥା ଜାଣି ପାରିଥାଆନ୍ତି ।

କପରି ?

ତ୍ୟାଗୀର ଶବ ଡାହାଣପଟ ମାଡ଼ି ପଡ଼ିଥିବାର ପୋଲିସ ଦେଖି ନ ଥିଲେ । ଶବ ପେଟେଇ ହୋଇ ପଡ଼ିଥିବାର ପୋଲିସ ଦେଖି ଥିଲେ । କିନ୍ତୁ ମୁଁ ଡାହାଣ କଡ ମାଡ଼ି ପଡ଼ିଥିବାର ଦେଖିଥିଲି ଓ ସେଇଠିକବେଳେ ତା'ର ଫଟୋ ମଧ୍ୟ ଉଠାଇଥିଲି । ହଠାତ୍ ଶବ ମୋ ଦ୍ୱାରା ହଲିଗଲା ଓ ସେ ଝୁଲିପଡ଼ି ପେଟେଇ ପଡ଼ିଥିଲା । ସେ କଥା ନିର୍ମାଣୀ କେବଳ ଜାଣି ପାରିଥାଆନ୍ତା ଯେ ଶବ ଡାହାଣ ପଟ ମାଡ଼ି ପଡ଼ିଥିଲା, କାରଣ ସେ ସେହି ଅବସ୍ଥାରେ ତାକୁ ଗୁଳି କରି ଆସିଥିଲା । ଆଜି ସକାଳେ ଅଜାଣତରେ ତା ମୁହଁରୁ ବାହାରି ପଡ଼ିଲା ଯେ, ଶବଟି ପେଟେଇ ପଡ଼ିଥିବାର ସେ ଦେଖିଛି ।

ତା'ହେଲେ ନିର୍ମାଣୀର କାର୍ଯ୍ୟକଳାପର ପ୍ରକୃତ ପର୍ଦ୍ଦା ତେବେ ଅନ୍ୟ ଫଟୋ ଉଠାଇଛି ?

'ଆଜ୍ଞା ହଁ ।'

ଆଉ ଗୋଟିଏ କଥା ମୋତେ ବୁଝାଇ କୁହ ଯେ ତୁମେ ଜୋଶୀକୁ କେଦାରନାଥ ଫ୍ଲାଟକୁ କାହିଁକି ଡାକିଥିଲ ?

କାରଣ କେଦାରନାଥର ତା' ଉପରେ ରାଗ ଥିଲା ଓ ମୋତେ ଘଟଣାସ୍ଥଳରେ ଜଣେ ସାକ୍ଷୀ ଦରକାର ଥିଲା । ଆଉ ମଧ୍ୟ ମୁଁ ଜାଣିଥିଲି ସେଠାରେ ଯଦି କିଛି ଗଣ୍ଡଗୋଳ ହୁଏ, ତେବେ ଜୋଣୀ ମୋତେ ସାହାଯ୍ୟ କରିବ ନାହିଁ କିମ୍ବା କେଦାରନାଥକୁ ମଧ୍ୟ ସାହାଯ୍ୟ କରିବ- ନାହିଁ ।

ତେବେ ତୁମେ ଆଗରୁ ଜାଣିଥିଲ ଯେ ସେଠାରେ କିଛି ଗଣ୍ଡଗୋଳ ହେବ ?

ଜାଣି ନ ଥିଲି, କିନ୍ତୁ ଗଣ୍ଡଗୋଳ ହେବାର ଆଶଂକା ଥିଲା ।

ନିମାଣୀକୁ ସାଙ୍ଗରେ ନେବା ପାଇଁ ମୁଁ ତୁମକୁ କହିଥିଲି ! ଯଦି ମୁଁ ସେପରି କହି ନଥାନ୍ତି ତା' ହେଲେ ?

'ତା ହେଲେ ମୁଁ ନିମାଣୀକୁ ମୋ ସାଙ୍ଗରେ ଯିବାକୁ କହିଥାଆନ୍ତି । ସେ ମନା କରି ନଥାନ୍ତା । ମନା କରିବାର କିଛି କାରଣ ନଥିଲା ଏବଂ ମୁଁ କାହିଁକି କେଦାରନାଥ ଫ୍ଲାଟକୁ ଯାଉଛି ସେ ଜାଣିବାକୁ ଇଚ୍ଛୁକ ଥିଲା ।'

ତାକୁ ତୁମେ ଖାଲି ରିଭଲଭର ଧରାଇବାର ଆଇଡ଼ିଆ ଖୁବ୍ ଜୋରଦାର ଥିଲା ।

ମୁଁ ଯଦି ସେପରି ନ କରି ଥାଆନ୍ତି ସୁବିଧା ଦେଖି ସେ ନିଜ ରିଭଲଭର ବାହାର କରିଥାଆନ୍ତା ଓ ହୁଏତ ଆମ ସମସ୍ତଙ୍କୁ ହତ୍ୟା କରି- ଥାଆନ୍ତା । ଆପଣ ଭୁଲନ୍ତୁ ନାହିଁ ଯେ ସେ ଆଗରୁ ଗୋଟିଏ ହତ୍ୟା କରି ସା ଥିଲା ଏବଂ ସେ ଜାଣିଥିଲା ଯେ ଏକ ଜଣକ ହତ୍ୟା କଲେ ଯେତିକି ଶାସ୍ତି ମିଳିବ, ଗୋଟିଏ ହତ୍ୟା କଲେ ମଧ୍ୟ ସେତିକି ଶାସ୍ତି ମିଳିବ । ଆଉ ମୁଁ ମଧ୍ୟ ଜାଣି ନଥିଲି ଯେ ପ୍ରକୃତରେ ସେଠାରେ କ'ଣ ହେବାର ଥିଲା । ସେଠାରେ ପ୍ରତ୍ୟକ୍ଷତଃ କେଦାରନାଥ ବିରୁଦ୍ଧରେ ମୁଁ ବିରାଟ କେଶ ପ୍ରସ୍ତୁତ କଲି । କେଦାରନାଥ ଜାଣିଥିଲା ଯେ ନିମାଣୀ ହତ୍ୟାକାରୀ ଥିଲା । ମୁଁ ଯେତେବେଳେ କହିଲି ଯେ କେଦାରନାଥ ଅପରାଧୀ ବୋଲି ମୁଁ ଟିପ୍‌ଣୀ ପାଇଛି ଏବଂ ତାଙ୍କୁ ଟେବୁଲ ତଳୁ ଫଟୋ ବାହାର କରି ଦେଖାଇଲି ଯେ

ହଠାତ୍ ପଡ଼ିବାକୁ ପ୍ରସ୍ତୁତ ହୋଇଗଲ । ସେ ଭାବିଥିଲ ଯେ କିମାଣୀ ତାକୁ ଫସେଇବାକୁ ଚେଷ୍ଟା କରୁଛ । କିମାଣୀ ଜାଣିଥିଲ ଯେ ସେହି ଫଟୋ ଅସଲ ହୋଇ ନପାରେ, କାରଣ ଅସଲ ଫଟୋ ସେ ନଷ୍ଟ କରି ଦେଉ- ଥିଲ । କିନ୍ତୁ ଏ କଥା ସେ ମୋ ସାମନାରେ କହି ପାରୁ ନଥିଲା, ଯଦି କହିଥାଆନ୍ତା ତା'ର କଥା ଜଣାପଡ଼ି ଯାଇଥାଆନ୍ତା । ତା' ସାମନାରେ ଏହା ମଧ୍ୟ ଦେଖା ଯାଉଥିଲା ଯେ କେଦାରନାଥ ଯେ କୌଣସି ସମୟରେ ପରିସ୍ଥିତିରେ ପଡ଼ି ସତ କଥା କହିପାରେ । ତେଣୁ ତା'ର ମୁହଁ ବନ୍ଦ କରିବା ପାଇଁ କିମାଣୀ କେଦାରନାଥକୁ ସୁଟ୍ କରିବାକୁ ନହାତି ଦରକାର ମନେକଲା ।

ତୁମେ ଜାଣିଥିଲ ଏପରି ହେବ ତେଣୁ ତୁମେ ଖାଲି ଇଭଲଭର ତାକୁ ଧରାଇ ଦେଇଥିଲ ?

'ମୋର ଭରସା ଥିଲା ଏପରି ଯେମିତି ନ ହୁଏ ।'

'ତୁମେ କ'ଣ କିମାଣୀକୁ ମୃତ୍ୟୁମୁଖରୁ ବଞ୍ଚାଇ ପାରିଥାନ୍ତ ?

'କହି ପାରିବ ନାହିଁ ।'

'ଗୃହିଁ ଥିଲେ ବଞ୍ଚାଇ ପାରିଥାଆନ୍ତ ?

ଏହି ସ୍ଥିତିର ମହତ୍ୱ ଖୁବ୍ ବେଶୀ । ସଂସାରରେ ସ୍ୱା ଠାରୁ ବଳ କଛି ନାହିଁ ।

ମଲିକବାବୁ ସୁନୀଲ ଆଡ଼କୁ ଅନାଇଲେ । ସେ ଟିକଏ ମୁରୁକିହସା ଦେଇ ସେଠାରୁ ଗ୍ଲଲିଗଲେ ।

ଏହି ସଂସାର ବିଚିତ୍ରତାର ଘର ଅଟେ - ସୁନୀଲ ସହଜ ସ୍ୱରରେ କହିଲେ - 'ମୁଁ ନିଜ ଆଖିରେ ଏପରି କେଶ୍ ଦେଖିଛି, ଯେଉଁଥିରେ ଅପରାଧୀ ବିରୁଦ୍ଧରେ କଠିନ କେଶ୍ ହେଲେ ମଧ୍ୟ ହାଇ ନ୍ୟାୟାଳୟରୁ ମୁକ୍ତ ମିଳୁଛି, କିନ୍ତୁ ନୀଚ ନ୍ୟାୟାଳୟରେ ଦଣ୍ଡ ମିଳୁଛି, ଉଚ୍ଚ ନ୍ୟାୟାଳୟରେ ଅପିଲ ହେଉଛି, ରାଷ୍ଟ୍ରପତିଙ୍କୁ କ୍ଷମା ପାଇଁ ଦରଖାସ୍ତ ଦିଆ ଯାଉଛି । ତା' ପରେ ଯାଇ ଫାଶୀର ଦିନ ନିର୍ଦ୍ଧାରିତ ହେଉଛି । ଅର୍ଥାତ୍ ଦୋଷୀ ଯାବ୍ୟସ୍ତ

ହେବା ପରେ ଅପରାଧୀକୁ ଶାସ୍ତି ମିଳିବା ମଧ୍ୟରେ କେତେ ବର୍ଷ ଅତିବାହିତ ହୋଇଯାଏ । ସେତେବେଳକୁ ନିଜାମ ବଦଳି ଯାଇଥାଏ । କାନୁନ୍ ବଦଳି ଯାଇଥାଏ । କିଏ ଜାଣେ ନୂଆ ସରକାର ଫାଶୀ ବହିଷ୍କାର ଘୋଷଣା କରି ଦେଇ ପାରନ୍ତି । ଠାକୁରର ହତ୍ୟାକାରୀ ବଞ୍ଚି ରହିବା ମୁଁ ଚାହୁଁ ନ ଥିଲି ।

ମଲ୍ଲିକବାବୁ କହିଲେ—'ଆଇସି' ।

ଆସନ୍ତୁ ଏହି ଖୁସିରେ ଗୋଟିଏ ଗୋଟିଏ ଜାମ ପିଇବା ଓ ଭଗବାନଙ୍କ ପାଖରେ ପ୍ରାର୍ଥନା କରିବା ଯେ ହତ୍ୟାକାରୀର ଆତ୍ମା ଜନ୍ମ ଜନ୍ମାନ୍ତର ପର୍ଯ୍ୟନ୍ତ ପରଲୋକରେ ଉଚିତ୍ ଶାସ୍ତି ପାଉ ।

ସୁଶୀଲ ବୋତଲ ଉଠାଇଲେ ଏବଂ ଦୁଇଟି ନୂଆ ପେଗ୍ ପ୍ରସ୍ତୁତ କଲେ ।

ମଲ୍ଲିକ ବାବୁ ନିଜ ଗ୍ଲାସ ଉଠାଇଲେ ସୁଶୀଲ ନିଜ ଗ୍ଲାସ ଉଠାଇଲେ ।

ଯେତେବେଳେ ସୁଶୀଲ ସେଠାରୁ ବିଦାୟ ନେଲେ ତାଙ୍କର ମୁହଁରେ ପରମ ସନ୍ତୋଷର ଭାବ ଥିଲା ।





ଲେଖିକା :—

# ଶ୍ରୀମତୀ ନଳିନୀପ୍ରଭା ପଟ୍ଟନାୟକ

ସାପ୍ତାହିକ ପତ୍ରିକା "ହଳଚଳ"ର ସଂପାଦକ
ହରି ପ୍ରକାଶ ତ୍ୟାଗୀଙ୍କର ହତ୍ୟାକାରୀ କିଏ ?
ମିସ୍ ଅଚଳା ମଜୁମଦାର ?
ମୋହନ ଲାଲ ଯୋଶୀ ? ?
ମିଷ୍ଟର ପ୍ୟାରେ ଲାଲ ନା ଆଉ କିଏ ? ? ?

ଏ ରହସ୍ୟ ଉଦଘାଟନ କରିଛନ୍ତି ଶ୍ରୀଯୁକ୍ତ ସୁନୀଲ କୁମାର ଚକ୍ରବର୍ତ୍ତୀ, ଷ୍ଟାଫ ରିପୋର୍ଟର 'ଦୈନିକ ବ୍ଲାଷ୍ଟ' ପଢନ୍ତୁ ଓ ନିଜର ମତାମତ ଲେଖିକାଙ୍କ ପାଖକୁ ଲେଖନ୍ତୁ ।

ପ୍ରକାଶକ :—
ଲକି ପବ୍ଲିକେଶନସ୍,
ଚଉଦ୍ୱାର, କଟକ

ମୂଲ୍ୟ ଟ ୬-୦୦